# ଜୟ ଶ୍ରୀରଘୁନାଥ

## ଶ୍ରୀରାମ ଭଜନ



**ଲୋକନାଥ ମିଶ୍ର**

# ଜୟ ଶ୍ରୀରଘୁନାଥ

## ଶ୍ରୀରାମ ଭଜନ



ରଚୟିତା:
ଲୋକନାଥ ମିଶ୍ର (ଭରଦ୍ୱାଜ)
ଓଡ଼ଗାଁ, ନୟାଗଡ଼

ପରମ୍ପରା ପ୍ରକାଶନ, ନୟାଗଡ଼

ଭକ୍ତିଅର୍ଘ୍ୟ

## ଜୟ ଶ୍ରୀରଘୁନାଥ

ଶ୍ରୀରାମ ଭଜନ


**ରଚୟିତା:**

**ଲୋକନାଥ ମିଶ୍ର (ଭରଦ୍ୱାଜ)**

ଓଡ଼ଗାଁ, ନୟାଗଡ଼

ମୋ: ୮୧୪୪୩୯୨୯୫୧



**ପ୍ରକାଶ ସମୟ: (ଦ୍ୱିତୀୟ ସଂସ୍କରଣ)**

**ଏପ୍ରିଲ୍ ୨୦୨୦**

**ପ୍ରକାଶକ :**

**ପରମ୍ପରା ପ୍ରକାଶନ, ନୟାଗଡ଼**

ମୋ: ୯୯୩୮୩୦୯୬୫୨

**ମୂଲ୍ୟ : ଟ. ୨୫/-**

(ପଚିଶ ଟଙ୍କା ମାତ୍ର)

# ଆତ୍ମ ନିବେଦନ

ପ୍ରତ୍ୟହ ପ୍ରଭୁ ଶ୍ରୀରଘୁନାଥଙ୍କର ଦର୍ଶନ ଏବଂ ବିଭିନ୍ନ ପର୍ବପର୍ବାଣିରେ ପ୍ରଭୁଙ୍କର ବିଭିନ୍ନ ବେଶ ଦର୍ଶନ ତଥା ଛଡ଼ାତୁଳସ ଓ ଚରଣାରମୃତ ପାନ କରି, ପ୍ରଭୁଙ୍କର ଚିନ୍ତାରେ ମନକୁ ନିୟୋଜିତ କରି, ଶେଷ ଜୀବନ ଓଡ଼ଗାଁରେ ଶାନ୍ତିରେ କଟାଇବାର ପରିକଳ୍ପନାକୁ ସାକାର କରିବା ଉଦ୍ଦେଶ୍ୟରେ, ଓଡ଼ଗାଁରେ ବାସଗୃହଟିଏ କରି ଅବସ୍ଥାନ କରିଥିଲୁ । ହୁଏତ ପ୍ରଭୁଙ୍କର କରୁଣା ଭୀକ୍ଷା କରିବାରେ କିଛି ତ୍ରୁଟି ରହିଗଲା । କିଶୋର ବୟସରେ ଓଡ଼ଗାଁରେ ଅଧ୍ୟୟନରତ ସମୟରୁ ୰ପିତାଙ୍କର ନିର୍ଦ୍ଦେଶରେ ପ୍ରଭୁଙ୍କର ଚରଣାରବିନ୍ଦରେ ଲୟ ଲଗାଇ, ଜୀବନର ଅନେକ କିଛି ଲକ୍ଷ୍ୟ ପ୍ରଭୁ ରଘୁନାଥଙ୍କର ଅପାର କରୁଣାରୁ ପୂରଣ ହୋଇଥିଲା । ସମସ୍ତ ଲକ୍ଷ୍ୟ ପୂରଣ ହୋଇଗଲେ ମଣିଷ ଆତ୍ମତୃପ୍ତିରେ ବିଭୋର ହୋଇ ପ୍ରଭୁଙ୍କୁ ଭୁଲିଯାଏ । ମାନବ ଜନ୍ମ ଶ୍ରେଷ୍ଠ ଜନ୍ମ । ପ୍ରଭୁଙ୍କର ଗୁଣ କୀର୍ତ୍ତନ କରି ସର୍ବଦା ଭଗବାନଙ୍କର ଧ୍ୟାନରେ ମନକୁ ନିୟୋଜିତ କଲେ ଜୀବନ ପୁରୁଷାର୍ଥ ହୁଏ । ତେଣୁ ପ୍ରଭୁ ରଘୁନାଥ, ଜୀବନରେ ଏକାକୀ କରିଦେଇ, ଜଞ୍ଜାଳମୁକ୍ତ କରିଦେଲେ, ସର୍ବଦା ଲୋତକାଞ୍ଜଳି ପ୍ରଦାନ ପୂର୍ବକ ତାଙ୍କରି ଶ୍ରୀଚରଣରେ ଲୟ ଲଗାଇବା ପାଇଁ । ନିଃସଙ୍ଗ ଜୀବନର ଏକମାତ୍ର ସାହା ଭରଷା ହିଁ ପ୍ରଭୁ ଶ୍ରୀରଘୁନାଥଙ୍କର ଶ୍ରୀଚରଣ ଯୁଗଳ । ସେଇ ପାଦପଦ୍ମକୁ ଦର୍ଶନ କରି ଶେଷ ନିଃଶ୍ୱାସ ତ୍ୟାଗ କରିବାର କାମନା ଓ ବାସନାରେ ପବିତ୍ର ରଘୁନାଥ ଧାମ "ଓଡ଼ଗାଁ"ରେ ପଡ଼ି ରହିଛି, ନିଃସଙ୍ଗ ଜୀବନର ସମସ୍ତ ଦୁଃଖକୁ ସୁଖ ବୋଲି ପାଥେୟ କରି । ଯାହା ପ୍ରଭୁଙ୍କର ଇଚ୍ଛା ତାହା ହିଁ ଜୀବନର ଧ୍ୟେୟ ହେଉ ।

ହିନ୍ଦି ଭାଷାରେ ଅନୁପ ଜଲଟା, ଅନୁରାଧା ପୋଡ଼ୱାଲ ପ୍ରଭୃତିଙ୍କ କଣ୍ଠରେ ଯଦିଓ ଅନେକ ଶ୍ରୀରାମ ଭଜନ ଶୁଣିବାକୁ ମିଳେ, ଓଡ଼ିଆରେ ବହୁ ପରିମାଣରେ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଅନେକ ଭଜନ, ଭିକାରୀ ବଳ, ଶାନ୍ତିଲତା ଛୋଟରାୟ ଏବଂ ଅରବିନ୍ଦ ମୁଦୁଲି ପ୍ରଭୃତିଙ୍କର କଣ୍ଠରେ ଶୁଣିବାକୁ ମିଳୁଥିବା ବେଳେ ପ୍ରଭୁ ଶ୍ରୀରାମଙ୍କର ଭଜନ ସେତେଟା ଶୁଣିବାକୁ ମିଳେ ନାହିଁ । ତେଣୁ ସେହି ପ୍ରଭୁଙ୍କୁ ସର୍ବଦା ଧ୍ୟାନ କରି, କିଛି ରାମ ଭଜନ ରଚନା କରିବାର ପ୍ରୟାସ କରିଛି । ପୂର୍ବରୁ "ପ୍ରଭୁ ରଘୁନାଥ ଭଜନ ମାଳା" ନାମରେ କେତୋଟି ଭଜନ ପ୍ରକାଶିତ ହୋଇ ପାଠକ ମହଲରେ ଆଦୃତ ଏବଂ ପ୍ରଶଂସିତ

ହୋଇଛି । "ଜୟ ଶ୍ରୀରଘୁନାଥ''(ଶ୍ରୀରାମ ଭଜନ)ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ଲେଖକ କୃତାର୍ଥ ହେବ ।

ପରିଶେଷରେ ଶ୍ରୀଯୁକ୍ତ ରାଧାଶ୍ୟାମ ପଟ୍ଟନାୟକ, ସମ୍ପାଦକ "ସନ୍ତାନ'' ତୁଳସୀପୁର, କଟକ ୮, "ଶ୍ରୀରାମ ଭଜନ'' ସଂକଳନଟିର ପାଣ୍ଡୁଲିପି ପାଠ କରି, ସଂଶୋଧନ କରିଦେଇ, ଅଭିମତ ଦେଇଥିବାରୁ ଏବଂ ଶ୍ରୀଯୁକ୍ତ ଡ. ମିନକେତନ ପୁରୋହିତ ଅ.ପ୍ରା, ଓଡ଼ିଆ ପ୍ରଫେସର ତଥା ପୂର୍ବତନ ଅଧ୍ୟକ୍ଷ ଅନୁଗୁଳ କଲେଜ ତାଙ୍କର ବହୁମୂଲ୍ୟ ସମୟ ଦେଇ ପାଣ୍ଡୁଲିପିଟି ପାଠ କରି ନିଜର ଅଭିମତ ପ୍ରଦାନ କରିଥିବାରୁ ଉଭୟ ମହାଭାଗଙ୍କ ନିକଟରେ ଲେଖକ ଚିରକୃତଜ୍ଞ ।

ଇତି
ବିନୀତ
ଲେଖକ



## ଅଭିମତ-୧

# ଜୟ ଶ୍ରୀରଘୁନାଥ ପୁସ୍ତକ ସମ୍ବନ୍ଧରେ ଦି'ପଦ

ଜନ୍ମବେଳୁ କଳାକୁ ନେଇ ମଣିଷ ସାଙ୍ଗରେ ଆସିଥାଏ । ବିଭିନ୍ନ ପରିବେଶର ପ୍ରଭାବରେ ତାହା ଭିନ୍ନ ଭିନ୍ନ ରଙ୍ଗରେ ବିକଶିତ ହୁଏ । କିଏ ହୁଏ ନୃତ୍ୟଶିଳ୍ପୀ, କିଏ ବା ଚିତ୍ରଶିଳ୍ପୀ ଆଉ କିଏ କବି, ନାଟ୍ୟକାର ।

ଜୀବନକୁ ସରସ ସୁନ୍ଦର କରିବାକୁ ସଂସାରକୁ ନୂତନ ଦିଗ୍‌ଦର୍ଶନ ଦେବାପାଇଁ କବି ଧରେ ଲେଖନି । ଚିତ୍ରକରର ତୂଳରେ ସୁନ୍ଦର ଚିତ୍ରଟିଏ ଦେଖିଲେ ଆଖି ଲାଖି ରହେ । କବି ବା ଲେଖକର କଲମରୁ ସେହିପରି ସୁରୁଚିପୂର୍ଣ୍ଣ ଲେଖାଟିଏ ପଢିଲେ ମନରେ ତା'ର ପ୍ରଭାବ ରେଖାପାତ କରେ । ନିଜର କଳାକୃତି ଯଦି ଈଶ୍ୱରାର୍ପିତ ହୁଏ ତେବେ କବି ପ୍ରତିଭା ମଧୁମୟ ଓ ପୂର୍ଣ୍ଣତା ଲାଭ କରେ ।

କବି ଜଣେ ଶ୍ରେଷ୍ଠ ପ୍ରେମିକ । ସେ କେତେବେଳେ ପ୍ରେମ କରେ ଆତ୍ମୀୟସ୍ୱଜନ, ପୁଣି କେତେବେଳେ ପ୍ରକୃତି ଓ ପରିପକ୍ୱ ଜୀବନରେ ସେ ହୋଇଯାଏ ଶ୍ରେଷ୍ଠ ପ୍ରେମିକ-ପାଗଳ ହୁଏ ପ୍ରଭୁ ପ୍ରେମରେ । ହସେ, କାନ୍ଦେ, ତନ୍ମୟ ହୁଏ ଆଉ ସେହି ସଫଳ ପ୍ରେମିକର ଲେଖା ହସାଏ, କନ୍ଦାଏ, ତନ୍ମୟକରେ ପାଠକମାନଙ୍କୁ ।

ଶ୍ରୀ ଲୋକନାଥ ମିଶ୍ରଙ୍କ କ୍ଷେତ୍ରରେ ତାହାହିଁ ଘଟିଛି । ତାଙ୍କର କେତେକ ଲେଖା ପଢିବାର ସୁଯୋଗ ପାଇଚି- ବିଭିନ୍ନ ପତ୍ରପତ୍ରିକାରେ । ବିଶେଷତଃ ତାଙ୍କ "ମନ ମରାଳ ଝୁରେ ।"

ଉର୍ବଶୀ କବିତା ଗୁଚ୍ଛରେ ନିଜର ଭାବାବେଗ ପ୍ରକାଶ କରିଛନ୍ତି ତାହା ପାଠକର ହୃଦୟକୁ ମଧ୍ୟ ନିବିଡ଼ ଭାବରେ ସ୍ପର୍ଶ କରେ, ଆଖିରୁ ଲୁହ ଝରାଏ ପଢିଲାବେଳେ । ପତ୍ନୀ ବିଚ୍ଛେଦରେ ତାଙ୍କ ମନ ମରାଳ ଝୁରି ଆତ୍ମହରା ହୋଇଛି । ସ୍ମୃତିପୂଜା କରି ପ୍ରେମର ପରାକାଷ୍ଠା ଦେଖାଇଛନ୍ତି । ପ୍ରଭୁ ରଘୁନାଥ ଭଜନ ମାଳାଟିଏ ପୂର୍ବରୁ ଗୁନ୍ଥି ସେ ଖୁବ୍ ଜନପ୍ରିୟ ହୋଇଛନ୍ତି । ତାଙ୍କ "ଜୟ ଶ୍ରୀରଘୁନାଥ" କବିତା ଗୁଚ୍ଛ ପାଣ୍ଡୁଲିପିଟି ପଢିବାର ସୁଯୋଗ ପାଇଛି । ଶ୍ରୀରାମଙ୍କ ପ୍ରେମରେ ସେ ବାଇଆ ହୋଇଛନ୍ତି । ତ୍ରେତୟାର ଶବରୀ ପରି ଆଖିରୁ ଲୁହ

ଝରଇ ତାଙ୍କ ସାନ୍ନିଧ୍ୟ ଲାଭ ପାଇଁ ପ୍ରାଣ ତାଙ୍କର କାନ୍ଦିଉଠିଛି । ସାଂସାରିକ ସବୁ ବନ୍ଧନରୁ ମୁକ୍ତ ହୋଇ ଏକମାତ୍ର ପ୍ରଭୁଙ୍କ ପ୍ରୀତି ବନ୍ଧନରେ ବାନ୍ଧି ହୋଇ ସେ ନିଃସଙ୍ଗ ଜୀବନ ପ୍ରଭୁ ରଘୁନାଥଙ୍କ ସେବାରେ, ଧ୍ୟାନରେ କଟାଇ ମଧୁର କରିବାକୁ ଦୃଢସଂକଳ୍ପ । ତା'ର ପରିଣତି "ଶ୍ରୀରାମ ଭଜନମାଳା''ର ଆତ୍ମପ୍ରକାଶ । ଭଜନମାଳାଟି ଅଠଚାଳିଶିଟି ଭଜନରେ ଗୁନ୍ଥା ହୋଇଛି । ଭାବାବେଗରେ ଲେଖାଗୁଡ଼ିକ ବେଶ୍ ମର୍ମସ୍ପର୍ଶୀ । ଭାଷା ଲେଖାର ଶୈଳୀ ମନଛୁଆଁ । ପୁରୁଣା ରାଗରାଗିଣୀ ଛନ୍ଦରେ ଲେଖାଗୁଡ଼ିକ ସାହିତ୍ୟିକ ମର୍ଯ୍ୟାଦାକୁ ଉଚ୍ଚ ସୋପାନକୁ ନେଇ ମୁକ୍ତି ପାଇଛି ।

କବି ବନ୍ଧୁ ଏହିପରି ଛନ୍ଦ, ଲୟ, ତାଳ, ରସକୁ ଆଧାର କରି କବିତାମାନ ଲେଖି, ଛନ୍ଦ, ତାଳ, ଲୟ ଭାବକୁ ବଞ୍ଚାଇ ରଖନ୍ତୁ । ତାଙ୍କ ଲେଖାରେ ପ୍ରଭୁ ରଘୁନାଥଙ୍କ କରୁଣାରୁ ପୁଷ୍ପଚନ୍ଦନ ବୃଷ୍ଟି ହେଉ-ଏତିକି ମାତ୍ର ଏ ଅବସରରେ ମୋର କାମନା ।

ଶ୍ରୀରାମ ନବମୀ
ତା ୧ ୨।୪।୨୦୦୦

ଶ୍ରୀ ରାଧାଶ୍ୟାମ ପଟ୍ଟନାୟକ
ସମ୍ପାଦକ "ସନ୍ତାନ''
ତୁଳସୀପୁର, ମଠସାହି
କଟକ-୮

## ଅଭିମତ-୨

# ଜୟ ଶ୍ରୀରଘୁନାଥ-ଏକ ବିହଙ୍ଗାବଲୋକନ

କବି ଶ୍ରୀ ଲୋକନାଥ ମିଶ୍ରଙ୍କ ଜନ୍ମ ପ୍ରସିଦ୍ଧ ରଘୁନାଥପୀଠ ଓଡ଼ଗାଁ ସଂଲଗ୍ନ କୋରପିଠା ଗ୍ରାମରେ । ଧର୍ମପ୍ରାଣା ପତ୍ନୀ ଉର୍ବଶୀ ଦେବୀଙ୍କ ସହିତ ପ୍ରତି ସଞ୍ଜସକାଳେ ଶ୍ରୀରଘୁନାଥଙ୍କ ଛଡ଼ାତୁଳସୀ ସେବନ ଓ ଚରଣୋଦଦକ ପାନ କରି ଶେଷ ଜୀବନ ଶାନ୍ତିରେ ବିତାଇବା ପାଇଁ ଓଡ଼ଗାଁରେ ବାସଗୃହିଟିଏ ନିର୍ମାଣ କରିଥିଲେ । କିନ୍ତୁ ହାୟ, ପ୍ରିୟା ଚାଲିଗଲେ କଳ୍ପନାର ବୈକୁଣ୍ଠପୁରୀକୁ, ଶ୍ରୀରଘୁନାଥଙ୍କ ନିତ୍ୟ ଧାମକୁ (ଯତ୍‌ଗତ୍ୱା ନ ନିବର୍ତ୍ତନ୍ତେ)-ସେହି ଜରାମୃତ୍ୟୁ ବିରହିତ, ନିତ୍ୟବସନ୍ତ ଲୀଳାୟିତ ଅମରଧାମକୁ । କବି ରହିଗଲେ ସ୍ମୃତିର ରାଜ୍ୟରେ ଆଉ ମିଳନର ଆଶାରେ ଅଶ୍ରୁ ସଜଳ ନୟନରେ ।

"ତୁମରି ସ୍ମୃତିରେ ବେଦନାର ବଂଶୀବାଜେ ସଦା ମନବନେ,  
ପରତେ କରିଛି ମରତେ ନହେଲେ ଭେଟିବି ସରଗେ ଦିନେ ।"

(୫-୭)

କବିଙ୍କ ହୃଦୟରେ ଜ୍ଞାନ ଉଦୟ ହେଲା, ବୈରାଗ୍ୟର ସୂତ୍ରପାତ ହେଲା । ପତ୍ନୀପ୍ରେମ କ୍ରମେ କ୍ରମେ ବିଷ୍ଣୁପ୍ରେମରେ ରୂପାନ୍ତରିତତ ହେବାକୁ ବସିଲା । କବି ୧୯୬୪ ସାଲରୁ ଲେଖନୀ ଚାଳନା ଆରମ୍ଭ କରିଥିଲେ । ପତ୍ନୀ ବିୟୋଗ ଜନିତ ଦୁଃଖରେ ଭାଙ୍ଗିପଡ଼ି କବି ପ୍ରଥମେ ଲେଖିଥିଲେ, "କର୍ମମୟ ଜୀବନ କାଳ ଭିତରେ ବଞ୍ଚିବା ପାଇଁ ସଂଘର୍ଷ କରି କରି ସୁଖ ତ କେବେ ପାଇ ନଥିଲି, ବରଂ ଜୀବନର ମରୁଭୂମିରେ ସବୁବେଳେ ଖାଲି ଦେଖିଥିଲି ନିରାଶାର ବାଲି । ତେଣୁ ଏ ବ୍ୟଥିତ ଜୀବନର ସକରୁଣ ଗାଥା ମନେପକାଇ ଅଶ୍ରୁଳ ନୟନରେ ନିଜକୁ ସାନ୍ତ୍ୱନା ଦେବାପାଇଁ ଲେଖନୀ ଧରିଛି ।" କବିଙ୍କର ସେହି ସୃଜନଶୀଳ ଲେଖନୀରୁ ଝରିଯାଇଥିଲା ତେଇଶିଟି ଭକ୍ତିରସାପ୍ଳୁତ କବିତାଗୁଚ୍ଛ "ପ୍ରଭୁ ରଘୁନାଥ ଭଜନମାଳା" । ପ୍ରତ୍ୟେକ କବିତାରେ କାରୁଣ୍ୟର ଏକ କ୍ଷୀଣସ୍ୱର ଅନ୍ତସଲିଳା ଫଲ୍‌ଗୁପରି ପ୍ରବାହିତ ହେଉଥିଲା ।

"ମୁହିଁ ଏକ ବଣମଲ୍ଲୀ ବଣେ ଫୁଟି ଝଡ଼ିଲି,  
ଅଲୋଡ଼ା ଜୀବନ ଧରି ଅକାରଣେ ସଢିଲି ।

ଜୀବନ ମୋ ମରୁମୟ ବଞ୍ଚିଛି ମୁଁ ଖାଲି,
ଦେଖେ ମୁହିଁ ଚାରିଆଡ଼େ ନିରାଶାର ବାଲି ।”

ମାତ୍ର ବର୍ତ୍ତମାନ ପ୍ରକାଶ ପାଇବାକୁ ଯାଉଥିବା “ଜୟ ଶ୍ରୀରଘୁନାଥ’’ରେ ସନ୍ନିବେଶିତ କବିତାଗୁଡ଼ିକର ଅନ୍ତସ୍ୱରରେ ନୈରାଶ୍ୟ ନାହିଁ । ଅନ୍ତସ୍ରୋତରେ ବ୍ୟର୍ଥତା ନାହିଁ । ଅବଶ୍ୟ କବିଙ୍କ ଚକ୍ଷୁରୁ ଏବେ ବି ଅଶ୍ରୁ ଝରୁଛି । ମାତ୍ର ତାହା ଶୋକାଶ୍ରୁ କି ପ୍ରେମାଶ୍ରୁ ସହଜରେ କହିହେଉନାହିଁ । “ଶେଷଇଚ୍ଛା’’ କବିତାରେ କବି ଉଦାତ୍ତ କଣ୍ଠରେ ଗାଇଛନ୍ତି–

“ଜନ୍ମେ ଜନ୍ମେ ଦିଅ ଦୁଖ,
ନ ଦିଅ ପଛକେ ଜୀବନେ ସୁଖ ହେ ରଘୁନନ୍ଦନ,
କେବେ ନହୁଅ ମୋରେ ବିମୁଖ, ହେ ରଘୁନନ୍ଦନ” ।୩।

ପୁଣି “ଏତିକି ମାଗୁଣି’’ କବିତାରେ କବି ଜଣେ ଧ୍ୟାନମଗ୍ନ ମୁମୁକ୍ଷୁ ରୂପରେ ଭାବବିହ୍ୱଳ ଚିତ୍ତରେ ବାଷ୍ପ ଗଦ୍‌ଗଦ୍ କଣ୍ଠରେ ନିଜର ଆରାଧ୍ୟ ଦେବତା ଶ୍ରୀ ରଘୁନାଥଙ୍କ ଠାରେ ଅଳି କରିଛନ୍ତି–

ସବୁ ତ ଦେଇଛ କିଛି ନାହିଁ ଦରକାର,
ତୁମ୍ଭ ନାମ ଜପି ଯାଉ ଏ ଜୀବନ ମୋର ।୭।

ଥରେ ମାତା କୁନ୍ତୀ ଦୁଇକର ଯୋଡ଼ି ଶ୍ରୀକୃଷ୍ଣଙ୍କୁ କହିଥିଲେ, “ହେ ସର୍ବଜ୍ଞ, ସର୍ବବ୍ୟାପୀ; ସର୍ବଶକ୍ତିମାନ୍ ପ୍ରଭୁ ମୋତେ କାହିଁକି ପ୍ରଲୋଭନ ଦେଖାଉଛ ? ହେ ପ୍ରଭୁ ମୋତେ ସର୍ବଦା ଦୁଃଖସାଗରରେ ବୁଡ଼ାଇ ରଖିଥାଅ । ମୁଁ ତୁମକୁ ସ୍ମରଣ କରୁଥିବି । ତୁମେ ମୋର ପାଖେ ପାଖେ ରହିଥିବ ।’’

“ତୋ ପାଦେ ପଶିଲି ଶରଣ । ମୋତେ ନ ଛାଡ଼ ନାରାୟଣ ।’’

ପାଷାଣୀ ଅହଲ୍ୟା ସେହିପରି ଶ୍ରୀରାମଙ୍କୁ ସ୍ତୁତି କରିଥିଲେ–

“ତୁମ୍ଭ ଶାନ୍ତିମୟ କାନ୍ତି ଚଉଦିଗେ ସୁଧାଢାଳେ ଅବିରଳେ,
ତୁମ୍ଭ ଶ୍ରୀଚରଣ କମଳେ ମୋ ମନ ଭ୍ରମର ରହୁ ନିଶ୍ଚଳେ ।’’

କବି “ଭରଦ୍ୱାଜ’’ ପତ୍ନୀ ପ୍ରେମର ସୀମିତ ଲୌକିକ ବନ୍ଧନଯୁକ୍ତ ପରିସରରୁ କ୍ରମେ କ୍ରମେ ଉର୍ଦ୍ଧ୍ୱକୁ ଉଠିଯାଇ ବନ୍ଧନମୁକ୍ତ ପ୍ରେମ, ପ୍ରୀତି, ପ୍ରଣୟ, ରତି, ସ୍ନେହ, ମାନ, ରାଗ, ଅନୁରାଗ ଆଦି ମଧୁରାତି ମଧୁର ଭକ୍ତି ରସର ବିଭିନ୍ନ ସୋପାନ ମଧ୍ୟ ଦେଇ ଭାବ ଓ ମହାଭାବ ଦିଗକୁ ଅଗ୍ରସର ହେଉଛନ୍ତି । ସାଧନା ତ ଆରମ୍ଭ ହୋଇଛି । କବିଙ୍କ ମନରୁ ନୈରାଶ୍ୟ, ସଂଶୟ, ଦ୍ୱନ୍ଦ୍ୱ, କ୍ଷୋଭ ସମ୍ପୂର୍ଣ୍ଣ ରୂପେ ଅପସରି ଯାଇନାହିଁ । କବି ବିଶ୍ୱାସ ଓ ସଂଶୟର ସନ୍ଧିକ୍ଷଣରେ

ଦଣ୍ଡାୟମାନ ହୋଇ କହୁଛନ୍ତି- "ମୋର ଏହି ବେଦନା-ବିଧୁର ଅନ୍ତରର ସକରୁଣ ନିବେଦନ ଭଗବାନ ଶୁଣିବେ କି ନାହିଁ, ମୁଁ ଜାଣେନା ।'' "ତାର ଅବା ମାର'' କବିତାରେ କବି ଭଗବାନଙ୍କ ଠାରେ ଅଭିମାନ ଭରା କଣ୍ଠରେ ଅଭିଯୋଗ କରୁଛନ୍ତି-

କେତେ ଦୁଃଖ ମୋତେ ଦେବ ମହାପ୍ରଭୁ
ସହି ମୁଁ ପାରୁନି ଆଉ ।୧।

ଏହା ତ ଭକ୍ତ ସହିତ ଭଗବାନଙ୍କ ରହସ୍ୟମୟ ଲୀଳା । ଗୋସ୍ୱାମୀ ତୁଳସୀ ଦାସ ରାମଚରିତ ମାନସରେ ଲେଖିଛନ୍ତି-ଭକ୍ତ ଯେତେବେଳେ ଭଗବାନଙ୍କ ଗୁଣ ଗାନ କରେ, ନାମ କୀର୍ତ୍ତନ କରେ, ଲୀଳା ଶ୍ରବଣ କରେ, କଥା ସ୍ମରଣ କରେ, ତା'ର ଶରୀର ରୋମାଞ୍ଚିତ ହୋଇଯାଏ, ପ୍ରାଣ ପୁଲକିତ ହୋଇଯାଏ, ନୟନରୁ ପ୍ରେମାଶ୍ରୁ ଝରିଯାଏ, କଣ୍ଠରେ ବାଷ୍ପ ଭରିଯାଏ । ଭକ୍ତ ଭଗବାନଙ୍କ ଠାରେ ଅଳି କରେ, ମାନ କରେ, ଅଭିମାନ କରେ, ଗାଳି ବର୍ଷଣ କରେ, ଶରଣ ପଶେ ଏବଂ ଭଗବାନଙ୍କୁ ବଶୀଭୂତ କରେ । କବି ଲୋକନାଥ ନବଧା ଭକ୍ତିର କେଉଁ ସ୍ତରକୁ ଉଠିଲେଣି, ତାହା ମୁଁ କହିପାରିବି ନାହିଁ । ତାଙ୍କ ଭଜନମାଳାରୁ ତାଙ୍କ ଠାରେ ଜଣେ ଭକ୍ତ କବିର କେତେକ ଲକ୍ଷଣ ପରିଲକ୍ଷିତ ହେଉଅଛି । ଉଦାହରଣ ସ୍ୱରୂପ-

"ହେ କରୁଣାକର ମୋଠାରେ କରୁଣା କର,
ସକଳ ଭରସା ଛାଡ଼ି ପାଦେ ଗଲି ଶରଣ ।''

(ଦୟାକର ଦୀନଜନେ)

ଏହା ନବଧା ଭକ୍ତିର ଶେଷ ସୋପାନ-ଆତ୍ମ ନିବେଦନର ଏକ ଦୃଷ୍ଟାନ୍ତ । କବି ବାରବାର ଶ୍ରୀରାମଙ୍କ ଗୁଣଗାନ କରିଛନ୍ତି, ଲୀଳା ସ୍ମରଣ କରିଛନ୍ତି, ଗାଥା ବର୍ଣ୍ଣନା କରିଛନ୍ତି, ଶ୍ରୀରାମଙ୍କ ପାଖରେ ଅଳି କରିଛନ୍ତି ।(୧) କୃତାଞ୍ଜଳୀପୁଟରେ ଭୀକ୍ଷା ମାଗିଛନ୍ତି । କୌଣସି ସଂଭ୍ରମ ସମ୍ଭୋଗ ମାଗି ନାହାନ୍ତି । ମାଗିଛନ୍ତି ମୁକ୍ତି ।

ମୁକ୍ତିଦିଅ ପ୍ରଭୁ ମୁକ୍ତିଦିଅ
ଜୀବନ ଜଞ୍ଜାଳୁ ସଂସାର ବନ୍ଧନୁ
ଜନ୍ମ ମରଣରୁ ମୁକ୍ତିଦିଅ । (ମୁକ୍ତିଦିଅ-୧)

ଗୀତଗୁଡ଼ିକର ଭାବ ଏବଂ ଭାଷା ବେଶ୍ ସ୍ତୁତିମଧୁର, ସାବଲୀଳ ଓ ସଙ୍ଗୀତମୟ ହୋଇଛି । ପାଠକ ଓ ଶ୍ରୋତାମାନଙ୍କର ମନ ପ୍ରାଣକୁ ଛୁଇଁ ଛୁଇଁ

ବାୟୁମଣ୍ଡଳରେ ଏକ ଆଧ୍ୟାତ୍ମିକ ବାତାବରଣ ସୃଷ୍ଟି କରିବ ବୋଲି ମୋର ଦୃଢ ବିଶ୍ୱାସ ।

(୧) ପୁତ୍ର ଯେପରି ପିତା ପାଖରେ ଅଳିକରେ, ସେହିପରି ଅଳି କରିଛନ୍ତି ।

ଅନୁଜତୁଲ୍ୟ କବି ଶ୍ରୀ ମିଶ୍ରଙ୍କର ସୃଜନଶୀଳ ଲେଖନ ଚିରଚଞ୍ଚଳ ହୋଇ ରହିଥାଉ । ଏହା ହିଁ ଶ୍ରୀ ରଘୁନାଥ ଏବଂ ଜଗଜ୍ଜନନୀ ମା'ଜାନକୀଙ୍କ ପାଦପଦ୍ମରେ ମୋର ପ୍ରାର୍ଥନା ।

ଶ୍ରୀରାମନବମୀ
୧ ୨।୪।୨୦୦୦

ମୀନକେତନ ପୁରୋହିତ
ସଭାପତି
ଅନୁଗୁଳ, ଜିଲ୍ଲା ସାହିତ୍ୟ ସଂସଦ

# ଶ୍ରୀରାମରକ୍ଷା ସ୍ତୋତ୍ର(ସଂଗୃହୀତ)

୧. ରାମଂ ଲକ୍ଷ୍ମଣ-ପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରମ୍
କାକୁସ୍ଥଂ କରୁଣାର୍ଣ୍ଣବଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକମ୍
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିମ୍
ବନ୍ଦେ ଲୋକାଭିରାମଂ ରଘୁକୁଳ ତିଳକଂ ରାଘବଂ ରାବଣାରିମ୍ ॥

୨. ରାମାୟ ରାମଭଦ୍ରାୟ ରାମଚନ୍ଦ୍ରାୟ ବେଧସେ
ରଘୁନାଥାୟ ନାଥାୟ ସୀତାୟା ପତୟେ ନମଃ ॥

୩. ଶ୍ରୀରାମ ରାମ ରଘୁନନ୍ଦନ ରାମ ରାମ
ଶ୍ରୀରାମ ରାମ ଭରତାଗ୍ରଜ ରାମ ରାମ
ଶ୍ରୀରାମ ରାମ ରଣକର୍କଶ ରାମ ରାମ
ଶ୍ରୀରାମ ରାମ ଶରଣଂ ଭବ ରାମ ରାମ ॥

୪. ଶ୍ରୀରାମଚନ୍ଦ୍ର ଚରଣୌ ମନସା ସ୍ମରାମି
ଶ୍ରୀରାମଚନ୍ଦ୍ର ଚରଣୌ ବଚସା ଗୃଣାମି
ଶ୍ରୀରାମଚନ୍ଦ୍ର ଚରଣୌ ଶିରସା ନମାମି
ଶ୍ରୀରାମଚନ୍ଦ୍ର ଚରଣୌ ଶରଣଂ ପ୍ରପଦ୍ୟେ ॥

୫. ମାତା ରାମୋ ମତ୍‌ପିତା ରାମଚନ୍ଦ୍ରଃ
ସ୍ୱାମୀ ରାମୋ ମତ୍‌ସଖା ରାମଚନ୍ଦ୍ରଃ
ସର୍ବସ୍ୱଂ ମେ ରାମଚନ୍ଦ୍ରୋ ଦୟାଳୁ
ର୍ନାନ୍ୟଂଜାନେ ନୈବଜାନେନଜାନେ ॥

୬. ଦକ୍ଷିଣେ ଲକ୍ଷ୍ମଣୋଯସ୍ୟ ବାମେଚ ଜନକାତ୍ମଜା
ପୁରତୋ ମାରୁତିର୍ଯସ୍ୟ ତଂ ବନ୍ଦେ ରଘୁନନ୍ଦନମ୍ ॥

୭. ଲୋକାଭିରାମଂ ରଣରଙ୍ଗ ଧୀରଂ
ରାଜୀବ ନେତ୍ରଂ ରଘୁବଂଶ ନାଥମ୍
କାରୁଣ୍ୟ ରୂପଂ କରୁଣାକରଂ ତଂ
ଶ୍ରୀରାମଚନ୍ଦ୍ରଂ ଶରଣଂ ପ୍ରପଦ୍ୟେ ॥

୮. ମନୋଜବଂ ମାରୁତ ତୁଲ୍ୟ ବେଗଂ
ଜିତେନ୍ଦ୍ରିୟଂ ବୁଦ୍ଧିମତା ବରିଷ୍ଠମ୍

ବାତାତ୍ମଜଂ ବାନରଯୁଥ ମୁଖ୍ୟଂ
ଶ୍ରୀରାମଦୂତଂ ଶରଣଂ ପ୍ରପଦ୍ୟେ ॥

୯. କୂଜନ୍ତଂ ରାମ ରାମେତି ମଧୁରଂ ମଧୁରାକ୍ଷରମ୍
ଆରୁହ୍ୟ କବିତା ଶାଖା ବନ୍ଦେ ବାଲ୍ମୀକି କୋକିଳମ୍ ॥

୧୦. ଆପଦାମପହର୍ତ୍ତାରଂ ଦାତାରଂ ସର୍ବସମ୍ପଦାମ୍
ଲୋକାଭିରାମଂ ଶ୍ରୀରାମଂ ଭୂୟୋ ଭୂୟୋ ନମାମ୍ୟହମ୍ ॥

୧୧. ଭର୍ଜନଂ ଭବ ବୀଜାନାଂ ମର୍ଜନଂ ସୁଖ ସମ୍ପଦାମ୍
ତର୍ଜନଂ ଯମ ଦୂତାନାଂ ରାମରାମେତି ଗର୍ଜନମ୍ ॥

୧୨. ରାମୋ ରାଜମଣିଃ ସଦା ବିଜୟତେ ରାମଂ ରମେଶଂ ଭଜେ
ରାମେଣାଭିହତା ନିଶାଚରଚମୂ ରାମାୟ ତସ୍ମୈ ନମଃ ॥

୧୩. ରାମାନ୍ନାସ୍ତି ପରାୟଣଂ ପରତରଂ ରାମସ୍ୟ ଦାସୋଃସ୍ମହ୍ୟମ୍
ରାମେ ଚିତ୍ତ ଲୟ ସଦାଭବ ତୁମେ ଭୋରାମ ମାମୁଦ୍ଧର ॥

୧୪. ଶ୍ରୀରାମ ରାମେତ ରାମେତି ରମେ ରାମେ ମନୋରମେ
ସହସ୍ରନାମ ତତ୍ତୁଲ୍ୟଂ ରାମନାମ ବରାନନେ ॥

୧୫. ଇତୀଦଂ କବଚଂ ଦିବ୍ୟଂ ନିୟମେନ ପଠେନ୍ନରଃ
ତସ୍ୟ ସର୍ବାର୍ଥସିଦ୍ଧିଃସ୍ୟାତ୍ ଶ୍ରୀ ମହେଶ ପ୍ରସାଦାତଃ ॥

ଇତି ଶ୍ରୀ ବୁଦ୍ଧ କୌଶିକ ମୁନି ବିରଚିତ
ଶ୍ରୀରାମ ରକ୍ଷା ସ୍ତୋତ୍ରଂ ସମ୍ପୂର୍ଣ୍ଣମ ॥

**ସମସ୍ତ କାର୍ଯ୍ୟ ସିଦ୍ଧି ପାଇଁ ସମ୍ପୁଟ ମନ୍ତ୍ରଃ**

ମଙ୍ଗଲ ଭବନ ଅମଙ୍ଗଲ ହାରୀ
ଦ୍ରବଉଁସୋ ଦଶରଥ ଅଜିର ବିହାରୀ ॥

**ବିପତ୍ତି ବିନାଶନ ପାଇଁ**

ମଙ୍ଗଲ ମୂରତି ମାରୁତି ନନ୍ଦନ
ସକଲ ଅମଙ୍ଗଲ ମୂଳ ନିକନ୍ଦନ ॥
ପବନ ତନୟ ସନ୍ତନ ହିତକାରୀ
ହୃଦୟ ବିରାଜିତ ଅବଧ ବିହାରୀ ॥
ଦୀନଦୟାଲ ବିରିଦୁ ସଂଭାରୀ
ହରହୁନାଥ ମମ ସଂକଟଭାରୀ ॥

## ଶ୍ରୀରାମ ସ୍ତୁତିଃ(ସଂଗୃହିତ)

ନୀଳାମ୍ବୁଜ ଶ୍ୟାମଳ କୋମଳାଙ୍ଗମ୍
ସୀତା ସମାରୋପୀତ ବାମ ଭାଗମ୍
ପାଣୌମହାସାୟକ ଚାରୁଚାପମ୍
ନମାମି ରାମଂ ରଘୁବଂଶ ନାଥମ୍ ।୧।
ଭବାବ୍ଧି ପୋତଂ ଭରତାଗ୍ରଜତମ୍
ଭକ୍ତପ୍ରିୟ ଭାନୁକୁଳ ପ୍ରଦୀପମ୍
ଭୁତ ତ୍ରିନାଥଂ ଭୁବନାଧିପତ୍ୟମ୍
ଭଜାମିରାମଂ ଭବ ରୋଗବୈଦ୍ୟମ୍ ।୨।
କର୍ପୂର ଗୌରଂ କରୁଣାବତାରମ୍
ସଂସାର ସାରଂ ଭୂଜଗେନ୍ଦ୍ର ହାରମ୍
ସଦା ବସନ୍ତଂ ହୃଦୟାରବିନ୍ଦେ
ଭବଂ ଭବାନୀ ସହିତେ ନମାମି ।୩।
ତ୍ୱମେବ ମାତାଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ।୪।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସିଦ୍ଧି ଲାଭ କରିଥିବା

### ରାମ ତାରକ ମନ୍ତ୍ର

"ରାଂ ରାମାୟ ନମଃ"

"ରାମ ରାମ ରାମ ରାମ ରାମ ରାମ ତାରକମ୍,
ରାମକୃଷ୍ଣ ବାସୁଦେବ ଗତି ମୁକ୍ତି ଦାୟକମ୍ ।"

### ସ୍ୱସ୍ତିବାଚନ

ସ୍ୱସ୍ତି ପ୍ରଜାଭ୍ୟୋ ପରିପାଳୟନ୍ତାମ୍
ନ୍ୟାୟେନ ମାର୍ଗେଣ ମହୀଂ ମହିସା
ଗୋ ବ୍ରାହ୍ମଣେଭ୍ୟୋ ଶୁଭମସ୍ତୁ ନିତ୍ୟମ୍
ଲୋକା ସମସ୍ତା ସୁଖିନୋ ଭବନ୍ତୁ ॥
କାଳେ ବର୍ଷତୁ ପର୍ଯ୍ୟନ୍ୟଃ ପୃଥିବ ଶସ୍ୟଶାଳିନୀ
ଦେଶୋୟଂ କ୍ଷୋଭ ରହିତଃ
ବ୍ରାହ୍ମଣା ସନ୍ତୁ ନିର୍ଭୟାଃ ॥

ଓଁ ସର୍ବେଷାଂ ସ୍ୱସ୍ତିର୍ଭବତୁ
ସର୍ବେଷାଂ ମଙ୍ଗଳଂ ଭବତୁ
ସର୍ବେଷାଂ ଶାନ୍ତିର୍ଭବତୁ
ସର୍ବେଭବନ୍ତୁ ସୁଖୀନଃ
ସର୍ବେସନ୍ତୁ ନିରାମୟା
ସର୍ବେଭଦ୍ରାଣୀ ପଶ୍ୟନ୍ତୁ
ମା କଶ୍ଚିତ୍ ଦୁଃଖ ଭାଗଭବେତ୍ ॥
ଓଁ ସହନା ବବତୁ ସହନୌଭୁନକ୍ତୁ
ସହବୀର୍ଯ୍ୟଂ କରବାବହୈ
ତେଜସ୍ୱୀନାବଧୀତମସ୍ତୁ
ମା ବିଦ୍ୱିଷା ବହୈ ॥
ଓଁ ଅସତୋ ମା ସଦ୍‌ଗମୟ
ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୁର୍ମାମମୃତଂଗମୟ ॥
ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦମ୍
ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ
ପୂର୍ଣ୍ଣମେବା ବଶିଷ୍ୟତେ ॥
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।



# ଶ୍ରୀ ରଘୁନାଥ ସ୍ତୁତି

ଜୟ ଜୟ ରଘୁନାଥ ହେ ରଘୁନନ୍ଦନ
ଜୟ ଜୟ ରଘୁନାଥ ରାଜୀବ ଲୋଚନ ॥
ଜୟ ଜୟ ରଘୁନାଥ କୌଶଲ୍ୟାନନ୍ଦନ
ଜୟ ଜୟ ରଘୁନାଥ ଜାନକୀଜୀବନ ॥
ଜୟ ଜୟ ରଘୁନାଥ ହେ ଭୟ ଭଞ୍ଜନ
ଜୟ ଜୟ ରଘୁନାଥ ଶରଣରକ୍ଷଣ ॥
ଜୟ ଜୟ ରଘୁନାଥ ପତିତପାବନ
ଜୟ ଜୟ ରଘୁନାଥ ଭକତ ଜୀବନ ॥
ଜୟ ଜୟ ରଘୁନାଥ ପରଂବ୍ରହ୍ମ ରାମ
ଜୟ ଜୟ ରଘୁନାଥ ଦୂର୍ବାଦଳଶ୍ୟାମ ॥
ଜୟ ଜୟ ରଘୁନାଥ ଅଗତିର ଗତି
ଜୟ ଜୟ ରଘୁନାଥ ଜୟ ରଘୁପତି ॥
ଜୟ ଜୟ ରଘୁନାଥ ହେ କରୁଣାସିନ୍ଧୁ
ଜୟ ଜୟ ରଘୁନାଥ ଜୟ ଦୀନବନ୍ଧୁ ॥
ଜୟ ଜୟ ରଘୁନାଥ ଦୁଃଖିଦୁଃଖହାରୀ
ଜୟ ଜୟ ରଘୁନାଥ ସତ୍ୟ ସନ୍ଧ ହରି ॥
ଜୟ ଜୟ ରଘୁନାଥ ଜୟ ରାବଣାରି
ଜୟ ଜୟ ରଘୁନାଥ ସନ୍ଥ ରକ୍ଷାକାରୀ ॥
ଜୟ ଜୟ ରଘୁନାଥ ଶରଣ ପଞ୍ଜର
ଜୟ ଜୟ ରଘୁନାଥ କରୁଣାସାଗର ॥
ଜୟ ଜୟ ରଘୁନାଥ ବାରେ କୃପାକର
ଜୟ ଜୟ ରଘୁନାଥ ତୁମେ ସାହା ମୋର ॥
ଜୟ ଜୟ ରଘୁନାଥ ତୁମେ ପିତାମାତା
ଜୟ ଜୟ ରଘୁନାଥ ତୁମେ ତ୍ରାଣକର୍ତ୍ତା ॥
ଜୟ ଜୟ ରଘୁନାଥ ରାମ ରାମ ବୋଲି
ଜୟ ଜୟ ରଘୁନାଥ ଯାଉ ଜୀବ ଚାଲି ॥
ଜୟ ଜୟ ରଘୁନାଥ ଚରଣେ ଶରଣ
ଜୟ ଜୟ ରଘୁନାଥ କର ପରିତ୍ରାଣ ॥

(ସ୍ୱର-ମାଣବସା ଲକ୍ଷ୍ମୀପୁରାଣ ବୃତ୍ତେ) ❋❋❋

# ଶେଷ ଇଚ୍ଛା

ରଘୁନାଥ ନାମ ବହି, ଓଡ଼ଗ୍ରାମେ ପୂଜା ପାଉଛ ରହି,
ହେ ରଘୁନନ୍ଦନ,
ସଙ୍ଗେ, ସୀତା ଓ ଲକ୍ଷ୍ମଣ ଭାଇ, ହେ ରଘୁନନ୍ଦନ ।୧।
ଦୁଃଖ ସାଗରରେ ପଡ଼ି, ଦିବାନିଶି ମୁହିଁ ମରୁଛି ସଢି
ହେ ରଘୁନନ୍ଦନ,
ଦିଅ, ମୋ ଆରତ ବାରେ ଫେଡ଼ି, ହେ ରଘୁନନ୍ଦନ ।୨।
କିଏ କାହିଁକି ଡାକିବ, ଦୁଃଖ ଜାଣି ଯଦି ମଉନ ହେବ
ହେ ରଘୁନନ୍ଦନ,
ଭକ୍ତ, ମାନଙ୍କ ଆସ୍ଥା ତୁଟିବ, ହେ ରଘୁନନ୍ଦନ ।୩।
ଜନ୍ମେ, ଜନ୍ମେ ଦିଅ ଦୁଃଖ, ନଦିଅ ପଛକେ ଜୀବନେ ସୁଖ
ହେ ରଘୁନନ୍ଦନ,
କେବେ, ନହୁଅ ମୋରେ ବିମୁଖ, ହେ ରଘୁନନ୍ଦନ ।୪।
ଭୋଗିଥିଲ କେତେ ଦୁଃଖ, ତେଣୁକି ଦେବନି କାହାକୁ ସୁଖ
ହେ ରଘୁନନ୍ଦନ,
ତୁମ, ଇଚ୍ଛା ମାର ଅବା ରଖ, ହେ ରଘୁନନ୍ଦନ ।୫।
ଯେତେ ଦୁଃଖ ଦେବ ଦିଅ, ମୋହ ପ୍ରତି ବାରେ ସଦୟ ହୁଅ
ହେ ରଘୁନନ୍ଦନ,
ମୋତେ ଚରଣେ ଆଶ୍ରୟ ଦିଅ, ହେ ରଘୁନନ୍ଦନ ।୬।
ଶେଷ ଇଚ୍ଛା ମୋ ଏତିକି, ମୃତ୍ୟୁ ଅନ୍ତେ ଜୀବ ଯିବ କତିକି
ହେ ରଘୁନନ୍ଦନ
ନରହିବ ମୋ ଯମ ଭିତିକି, ହେ ରଘୁନନ୍ଦନ ।୭।
(ସ୍ୱର-ସତେ କି ଏ ଜୀବ ଯିବ)



# ଅନାଥର ନାଥ

ଅନାଥର ନାଥ ରଘୁନାଥ ଦୟାସାଗର
ଭାସୁଛି ଦୁଃଖ ସମୁଦ୍ରେ କର ମୋତେ ଉଦ୍ଧାର, ପ୍ରଭୁ କର... ।
ବେଳୁଁ ବେଳ ମନ ପ୍ରାଣ ବ୍ୟାକୁଳିତ ମୋହର
ଅସ୍ଥିର ଚିତ୍ତ ମୋ ସ୍ଥିର କର ତୁମ ପୟର, ପ୍ରଭୁ କର... ।
ମାୟା ଜଞ୍ଜାଳରେ ପଡ଼ି ହେଉଛି ମୁଁ ଅଧୀର
କୃପାକର ଦୀନଜନେ ହୁଅ ନାହିଁ ବଧିର, ପ୍ରଭୁ ହୁଅ... ।
ନାହିଁ ଇଚ୍ଛା ଦୁନିଆରେ ଆଉ ସୁଖ ଭୋଗର
ଶ୍ରୀଚରଣେ ଆଶ୍ରାଦିଅ ହେ କରୁଣାସାଗର, ପ୍ରଭୁ ହେ କରୁଣା... ।
ଦିବାନିଶି ତୁମ୍ଭ ନାମ ଜପିବାକୁ ହୃଦର
ଏତିକି ମାଗୁଣି ମତି ରହୁ ପଦ୍ମପାଦର, ପ୍ରଭୁ ରହୁ... ।
ଜୀବନ ଯିବାର ବେଳେ ତୁମ୍ଭ ନାମ ଠାକୁର
କରୁଣା କରିବ ବାରେ ଉଚ୍ଚାରିବି ମୁଖର, ପ୍ରଭୁ... ।

(ସ୍ୱର-ପତିତପାବନ ବାନା ଆଉ କେତେ ବେଳକୁ)



# ଶରଣ ଚରଣ ତଳେ

ହେ ରଘୁନାଥ,
ତୁମେ ଥାଉ, ହେଲି ମୁଁ ଅନାଥ ହେ...
ଓଡ଼ଗ୍ରାମରେ ବିଜେ, ସୀତା ସୌମିତ୍ରି ସଙ୍ଗେ ।୧।

ଶୁଣୁଛ ଭକତଙ୍କ ଆର୍ତ୍ତ, ହେ ରଘୁନାଥ(ଘୋଷା)
ବିଶ୍ୱାମିତ୍ର ସଙ୍ଗେ ଗଲ, ବନେ ତାଡ଼କା ବଧିଲ ।୨।

ଉଦ୍ଧାରିଲ ଅହଲ୍ୟାକୁ ପଥେ ହେ ରଘୁନାଥ...
ଭକତି ଭରେ ଧୀବର ଧୋଇଲା ତବ ପୟର ।୩।

ନର ଜନ୍ମ କଲା, ପୁରୁଷାର୍ଥ ହେ ରଘୁନାଥ...
ପିତା ସତ୍ୟେ ବନେଗଲ, ସୁଗ୍ରୀ ସଙ୍ଗେ ମିତ୍ର ହେଲ ।୪।

ଅନ୍ୟାୟୀ ବାଳୀକୁ, କଲ ହତ, ହେ ରଘୁନାଥ...
ସମୁଦ୍ରେ ସେତୁ ବାନ୍ଧିଲ, ରାବଣକୁ ବିନାଶିଲ ।୫।

ବିଭୀଷଣେ କଲ, ଲଙ୍କନାଥ ହେ ରଘୁନାଥ...
ସୀତା ଧରି ସଙ୍ଗତରେ ମିଳିଲ ଅଯୋଧ୍ୟାପୁରେ ।୬।

ରାମ ରାଜ୍ୟ କଲ, ପ୍ରତିଷ୍ଠିତ ହେ ରଘୁନାଥ...
ଶରଣ ଚରଣ ତଳେ ପଶୁଛି ମରଣ କାଳେ ।୭।
ଦରଶନ ଦେବ ସୀତାକାନ୍ତ ହେ ରଘୁନାଥ...

(ସ୍ୱର-ହେ, ରାଧାଈଶ, ଶୋଭା ବଡ଼ ସିଂହାର ବେଶ)



# ଦୟାକର ଦୟାନିଧି

ହେ ରଘୁନନ୍ଦନ,
ଜାନକୀ ଜୀବନ ଜଗଜନ ବନ୍ଦନ,
ଏ ଦୀନ ଦୁର୍ଗତି ପ୍ରଭୁ କର ଖଣ୍ଡନ, ହେ...
ଦୁଃଖୀ ଦୁଃଖ ହାରୀ, ସତ୍ୟ ସନ୍ଧ ହରି,
ଦନୁଜ ସଂହାରୀ ସନ୍ଥ ରକ୍ଷାକରି,
ଉଡ଼ାଇଛ ଯଶ କୀର୍ତ୍ତି, ତିନି ଭୁବନ...ହେ ।୧।

ଭବପାରାବାରେ ବୁଡ଼ି ନିରନ୍ତରେ
ଡାକୁଛି ଆତୁରେ ମୁକ୍ତି ଦିଅ ବାରେ,
ଦାଶରଥି ଦାସ ଦୁଃଖ କର ମୋଚନ, ହେ... ।୨।

ତୁମ ଶ୍ରୀଚରଣ, କରି ଦରଶନ
ଯାଉ ମୋ' ଜୀବନ, ହେ ପଦ୍ମଲୋଚନ,
ଏତିକି ସୁଦୟା କର ଆରତ ତ୍ରାଣ ହେ...।୩।

କୈବର୍ତ୍ତ ସମାନ ମୁଁ ମୂଢ ଅଜ୍ଞାନ
ନାହିଁ ପୂଜା ଭକ୍ତି ଅରଚନା ଜ୍ଞାନ,
ଦୟାନିଧି ଦୟାକର, ଗଲି ଶରଣ ହେ ।୪।

(ସ୍ୱର- ହେ ଚକାନୟନ ଅଗିତିର ଗତି ଦୀନଦୁଃଖନାଶନ)



# ଶ୍ରୀଚରଣେ ଦିଅ ଆଶ୍ରା

ଆହେ ରଘୁନନ୍ଦନ, ପତିତ ଜନ ତାରଣ
ଏ ଦୀନ ଦୁର୍ଗତି ବାରେ କର ପ୍ରଭୁ ହରଣ, ଆହେ...

ବିଶ୍ୱାମିତ୍ର ସଙ୍ଗେ ଯାଇ, ତାଡ଼କାକୁ ବଧିଣ
ଗଉତମ ଶାପୁ କଲ ଅହଲ୍ୟା ଉଦ୍ଧାରଣ । ଆହେ...

ଶିବଧନୁ ଭାଙ୍ଗି ସୀତା ପାଣି କଲ ଗ୍ରହଣ
ପଥେ ପର୍ଶୁରାମ ଦର୍ପ କରିଅଛ ଦଳନ ।

ପିତୃସତ୍ୟ ରକ୍ଷାକରି, ବନେ କଲ ଗମନ
ସୁଗ୍ରୀ ସଙ୍ଗେ ମିତ୍ର ହୋଇ ବାଳୀ କଲ ନିଧନ ।

ସମୁଦ୍ରରେ ସେତୁ ବାନ୍ଧି, ରାବଣକୁ ବଧିଣ
ସୀତାଙ୍କୁ ଉଦ୍ଧାରି ରାମ, ରାଜ୍ୟ କଲ ସ୍ଥାପନ ।

ଅତି ଆରତରେ ପ୍ରଭୁ, କରୁଛି ମୁଁ ଜଣାଣ
ଶ୍ରୀଚରଣେ ଦିଅ ଆଶ୍ରା ପଶିଲି ମୁଁ ତାରଣ ।

ଆହେ, ରଘୁ ନନ୍ଦନ, ପତିତ ଜନ ଶରଣ
ଏ ଦୀନ ଦୁର୍ଗତିବାରେ କର ପ୍ରଭୁ ହରଣ ।

(ସ୍ୱର-ଆହେ ନୀଳଶଇଳ ପ୍ରବଳ ମତ୍ତ ବାରଣ)



# ତାର ଅବା ମାର

କେତେ ଦୁଃଖ ମୋତେ ଦେବ ମହାପ୍ରଭୁ
ସହି ମୁଁ ପାରୁନି ଆଉ,
ତୁମକୁ ଭରସା କରି ଲୋକହସା
ହେଲି ତୁମେ ଥାଉ ଥାଉ, ମହାପ୍ରଭୁ ହେ ।୧।
ତୁମ୍ଭ ନାମ ଘୋଷି ଘୋଷି ଦିବାନିଶି
ଦୁଃଖ ସାଗରରେ ଗଲି ବୁଡ଼ି,
ତୁମ୍ଭ ଶ୍ରୀଚରଣ ସଦା କରି ଧ୍ୟାନ,
ସଢୁଛି ରୌରବ ନର୍କେ ପଡ଼ି ।୨।
ଯଶବାନା ଯେତେ ଉଡୁଛି ଜଗତେ,
ସେ କଥା କି ପ୍ରଭୁ ନୁହେଁ ସତ,
ତୁମ୍ଭେ ଥାଉ ନାଥ, ହେଲି ମୁଁ ଅନାଥ
ତ୍ରାହିକର ବାରେ ରଘୁନାଥ ।୩।
ଡାକି ତ ନଥିଲା ପାଷାଣି ଅହଲ୍ୟା
ଡାକି ନଥିଲା ତ କଇବର୍ତ୍ତ
ଡାକିଥିଲା କିବା ବାନର ସୁଗ୍ରୀବ
ବାଳୀ ଦ୍ୱାରା ହୋଇ ପରାଭୁତ ।୪।
ଆପେ ପାଶେ ଯାଇ ପ୍ରଭୁ ଦୟାବହି
ଉଦ୍ଧାରି ଦେଇଛ ଗତି ମୁକ୍ତି
ନିତି ନିତି ଡାକି ଡାକି ଗଲି ଥକି
ମଉନେ ବସିଛ ରଘୁପତି ।୫।
ତାରିଛ ତ କେତେ ମାରିଛ ତ କେତେ
ନଶୁଣ କିମ୍ପାଇଁ ମୋ ଆରତ
ତାର ଅବା ମାର, ଯାହା ପ୍ରଭୁ କର
ଶରଣ ପଶିଲି ପାଦଗତ ।୬।

(ସ୍ୱର-ପତିତ ଜନଙ୍କୁ ଉଦ୍ଧାରିବା ପାଇଁ)



# କର କାରଣ

କରୁଣା ସାଗର ଦୟାମୟ ରଘୁନାଥ
ବିଜେ ଓଡ଼ଗ୍ରାମେ ସୀତା ଲକ୍ଷ୍ମଣ ସହିତ
ସମ୍ମୁଖରେ ହନୁମାନ
ବୀର ବଜରଙ୍ଗ ବଳୀ ଭକ୍ତ ଅଗ୍ରଗଣ୍ୟ । ।୧।
ପବିତ୍ର ଏ ଅତ୍ରୀଧାମ ଅଟେ ଓଡ଼ଗ୍ରାମ
ସମଗ୍ର ଉତ୍କଳେ ଖ୍ୟାତ ପ୍ରଭୁ ତୁମ ନାମ
ଉପଇନ୍ଦ୍ର ଅନୁସରି
ବିଖ୍ୟାତ "କବି ସମ୍ରାଟ" ପାଇ କୃପାବାରି ।୨।
ସୁବର୍ଣ୍ଣ କଳସ ଶୋଭା ଅତି ମନୋହର
ପତିତପାବନ ବାନା ଉଡ଼େ ଫରଫର
କେତେ କେତେ ଭକ୍ତଗଣ
ଦୁଃଖ ଜଣାଇ କରନ୍ତି ନିତ୍ୟ ଦରଶନ ।୩।
ମର୍ଯ୍ୟାଦା ପୁରୁଷୋତ୍ତମ ପ୍ରଭୁ ରଘୁନାଥ
ଅଗତିର ଗତି ତୁମେ ଅନାଥର ନାଥ
ଦୟାକର ଅନାଥରେ,
ଏ ମାୟା ସଂସାରୁ ପ୍ରଭୁ ମୁକ୍ତି ଦିଅ ବାରେ ।୪।
ସନ୍ଧ୍ୟା ଆଳତି ଦର୍ଶନ ନିତି କରୁଥିବି
ତୁଳସୀ ପାଦୁକ ପାଇ କୃତକୃତ୍ୟ ହେବି
ଆହେ ଦୟାର ସାଗର
ଜୀବନ ମୋ ଯାଉ ପ୍ରଭୁ ଏହି କୃପାକର ।୫।
ବିଚଳିତ ମନ ସଦା ନିଅ ସତପଥେ,
ହୃଦୟେ ମୋ ତୁମ ଚିନ୍ତା ରହୁ ଅନୁବ୍ରତେ
କର ଜୀବନ କାରଣ
ସକଳ ଭରସା ଛାଡ଼ି ପଶିଲି ଶରଣ ।୬।
(ସ୍ୱର-ନିର୍ମଳ ଚନ୍ଦ୍ରମଣ୍ଡଳ)
(ସ୍ୱର-ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନ ସ୍ୱାମୀ)

❋❋❋



# ଦୟାକର ଦୀନଜନେ

ଦୟସାଗର ପ୍ରଭୁ ରଘୁନନ୍ଦନ, ଦୟାସାଗର...
ଦୟାକର ଦୀନଜନେ ବାରେ କଂଜବଦନ ।। ଦୟାସାଗର...
ନବଦୁର୍ବାଦଳକାନ୍ତି ଦର୍ଶନେ ମିଳଇ ଶାନ୍ତି
ଆହାକି ସୁନ୍ଦର ମୂର୍ତ୍ତି, ସୀତା ରାମ ଲକ୍ଷ୍ମଣ ।।
ଭବ ଭୟ ଭଂଜନ ମୁନି ମାନସ ରଂଜନ
ଦୁଷ୍ଟ ବିନାଶନେ କରେ ଶର ଚାପ ଧାରଣ ।।
ଦୀନବନ୍ଧୁ ଦଇତାରି ଦୀନଜନେ କୃପାକରି
ଦୁଃଖ ସାଗରରୁ ପ୍ରଭୁ କରବାରେ ତାରଣ ।।
ପତତପାବନ ହରି ପତିତରେ କରପାରି
ସୀତାରାମ ଜପି ଜପି ଯାଉ ମୋର ଜୀବନ ।।
ହେ ପ୍ରଭୁ କରୁଣାକର ମୋଠାରେ କରୁଣା କର
ସକଳ ଭରସା ଛାଡ଼ି ପାଦେ ଗଲି ଶରଣ ।।
ଦୟାସାଗର ପ୍ରଭୁ ରଘୁନନ୍ଦନ
ଦୟାକର ଦୀନଜନେ ବାରେ କଂଜବଦନ ।।

(ସ୍ୱର-ଜଗାକାଳିଆ ପାଦେ ଗଲି ଶରଣ)



# ଏତିକି ସୁଦୟା ମୋତେ କରିବ

ହେ ପ୍ରଭୁ, ଏତିକି ସୁଦୟା ମୋତେ କରିବ
ରାମ ରାମ ଗାଇ ଗାଇ, ମୋ ଜବନ ଯିବ...ଏତିକି.
ନିତି ନିତି ଢାଳୁଥିବି ନୟନୁ ଲୋତକ
ଚରଣ ପଖାଳି ମନ ପ୍ରାଣ ହେବ ତୃପ୍ତ ।୧।
ସ୍ୱର୍ଗ ସୁଖ ମାଗୁ ନାହିଁ ଦିଅ ନର୍କ ଭୋଗ
ଥରେ ମାତ୍ର ଜୀବନେ ଦର୍ଶନ ମୋତେ ଦେବ ।୨।
ଦୁଃଖେ ପଛେ ରହେ ତୁମ ଚିନ୍ତା ହୃଦୟରେ ,
ଆସିବ ଯେପରି ଜୀବ ଯିବା ସମୟରେ ।୩।
ଦିବା ନିଶି ତୁମ ରୂପ ନେତ୍ର ଦେଖୁଥିବ
ଅନ୍ତିମ ସମୟେ ଶ୍ରୀଚରଣେ ସ୍ଥାନ ଦେବ ।୪।
ଏତିକି ସୁଦୟା ମୋତେ କରିବ ଏତିକି... ।

(ସ୍ୱର-ଏତେ ବଡ଼ ଭାଗ୍ୟ ମୋର ହେବ କି ? ବୃତ୍ତେ)



# ଭଜ ସଦା ରାମନାମ

ଭଜ ତୁହି ରାମନାମ ବାଇମନ
ଭଜ ତୁହି ରାମନାମ
ରାମ ନ ଭଜିଲେ ଏ କଳିଯୁଗରେ
ଭୋଗିବୁ ଦୁଃଖ ଅସୀମ, ବାଇମନ ।୧।

ଧନ ଓ ସମ୍ପତ୍ତି ପୁତ୍ର କନ୍ୟା ପତ୍ନୀ
ସବୁ ଅଟେ ଅକାରଣ
ଆଣିନାହୁଁ କିଛି ନେବୁନାହିଁ କିଛି
ସଙ୍ଗେ ଯିବ ରାମନାମ, ବାଇମନ ।୨।

ଆତ୍ମା ଯେବେ ଛାଡ଼ି ଯିବ ଶୂନ୍ୟେ ଉଡ଼ି
ଶରୀର ରହିବ ପଡ଼ି
ଶବ ବୋଲି କହି କୋକେଇରେ ବୋହି
ନେବେ ଶମଶାନେ ପୋଡ଼ି, ବାଇମନ ।୩।

ଆପଣାର ଥିବୁ ସାତପର ହେବୁ
ପ୍ରେତ ଆତ୍ମା ବୋଲାଇବୁ
ଶୁଦ୍ଧି ତୋତେ ହେବେ ମନୁ ପାଶୋରିବେ
ପିତୃଲୋକ ହୋଇଯିବୁ, ବାଇମନ ।୪।

ଅସାର ସଂସାର କେହି ନୁହେଁ କାର
ସାର ଏକା ରାମନାମ
ସେ ପବିତ୍ର ନାମ କର ସଦାଧ୍ୟାନ
ଭଜ ସଦା ସେହି ନାମ, ବାଇମନ ।୫।
ଭଜ ସଦା ରାମନାମ... ।

(ସ୍ୱର-ଭଜୁ କିନା ରାମ ନାମରେ କୁମର)



# ବାରେ କରୁଣାକର

ବାରେ କରୁଣାକର, ହେ ଶ୍ରୀରାମ (୨)
ଡାକି ଡାକି ହଂସା ଉଡ଼ିଲା ମୋର, ହେ ଶ୍ରୀରାମ ।(ଘୋଷା)
ତୁମକୁ ଭରସା କରି ଜୀବନେ
ସୁଖ ନପାଇଲି କେବେ ମୁଁ ଦିନେ,
ପାଇଲି କେବଳ ଯାତନା ଘୋର, ହେ ଶ୍ରୀରାମ ।୧।

କିଏ ବା ଦେଇଛି ତୁମକୁ କିସ ?
ମୁଁ ନଦେଲି ବୋଲି କଲ ନିରାଶ
ବୁଡ଼ାଇ ମାରୁଛ ଦୁଃଖ ସାଗର, ହେ ଶ୍ରୀରାମ ।୨।

ପଥର ହୋଇ ପଥରେ ଅହଲ୍ୟା
ପଡ଼ିଥିଲା କୁହ କି ଅବା ଦେଲା ?
ଚରଣ ଛୁଆଁଇ କଲ ଉଦ୍ଧାର, ହେ ଶ୍ରୀରାମ ।୩।

ମହା ଅଜ୍ଞାନୀ ସେ ଥିଲା କୈବର୍ତ୍ତ
ପାଦ ଧୋଇ ଚତୁର୍ବର୍ଗ ପ୍ରାପତ
କିବା ଦେଇଥିଲା କୁହ ସତ୍ୱର, ହେ ଶ୍ରୀରାମ ।୪।

ପମ୍ପାତୀରେ ଥିଲା ଶବରୀ ଚାହିଁ
ତା ପାଶେ ପ୍ରବେଶ ହୋଇଲ ଯାଇ
ଅଇଁଠା ଫଳକୁ ଖାଇଲ ତା'ର, ହେ ଶ୍ରୀରାମ ।୫।

ମୁକ୍ତି ଦେଇ ତାକୁ ସ୍ୱର୍ଗେ ପେଶିଲ
ବିଭୀଷଣେ ରାଜମୁକୁଟ ଦେଲ,
ମୋ ବେଳକୁ କିମ୍ପା ହେଲ ନିଷ୍ଠୁର, ହେଶ୍ରୀରାମ ।୬।

(ସ୍ୱର-ତୋରେ ଶରଣ ଗଳିରେ ମୂରଲି ବୃତ୍ତେ)



# ସୀତା ରାମ ଭଜ

ଜୟ ରାମ ରାମ ସୀତା ସୀତା
ଲକ୍ଷ୍ମଣ ଲକ୍ଷ୍ମଣ ଭଜରେ
ରାମ, ଲକ୍ଷ୍ମଣ, ଜାନକୀ ଭଜରେ
ଚିନ୍ତ ସେ ପଦ ସରୋଜ ରେ । ଜୟ ରାମ ରାମ
ଭବ ବନ୍ଧନ ଭୁଲିଯା ମନ
ଶ୍ରୀରାମ ନାମ କରତୁ ଧ୍ୟାନ
ଲଭିବୁ ମୁକ୍ତି ପରମ ଗତି
ପାଇ ସେ ଚରଣ ରଜରେ । ଜୟ ରାମ ରାମ
ପରମବ୍ରହ୍ମ ପରମଧର୍ମ
ପରମ ପିତା ସେହି ଶ୍ରୀରାମ
ସେ ମୁକ୍ତିଦାତା ସେ ତ୍ରାଣକର୍ତ୍ତା
ସେ ରାମ ପ୍ରେମରେ ମଜରେ । ଜୟ ରାମ ରାମ
ଭକତ ଶ୍ରେଷ୍ଠ ହେ ହନୁମନ୍ତ
ଶ୍ରୀରାମ ନାମ ଜପି ସତତ
ହେଲେ ଅମର ଅଜେୟ ବୀର
ଧ୍ୟାୟି ସେ ପଦ ପଙ୍କଜରେ । ଜୟ ଜୟ ଜୟ

(ସ୍ୱର-ଜୟ ରାଧେ ରାଧେ କୃଷ୍ଣ କୃଷ୍ଣ ବୃନ୍ଦେ)



# ଭବସାଗରୁ ଉଦ୍ଧାର

ଶରଣ ପଞ୍ଜର ହରି ହେ ରଘୁନାଥ
ଚରଣକିଙ୍କର ମୁଁ ଯେ ହେଲି ଅନାଥ ।୧।

କେତେ କାହାକୁ ତାରିଛ, ବିପଦରୁ ଉଦ୍ଧାରିଛ
ଡାକି ଡାକି ଥକିଲି ମୁଁ ନ ଶୁଣ ଆର୍ତ୍ତ ।୨।

ବିଶ୍ୱାମିତ୍ର ଯଜ୍ଞ ରକ୍ଷା, କରି ବଧିଲ ତାଡ଼କା
ଗୌତମ ଶାପୁ ଅହଲ୍ୟା ତାରିଲ ପଥ ।୩।

ଧୀବର ପାଦ ଧୋଇଲା ଅଷ୍ଟଐଶ୍ୱର୍ଯ୍ୟ ପାଇଲା
ବାଲୀବଧି ସୁଗ୍ରୀ ସଙ୍ଗେ ହୋଇଲ ମିତ ।୪।

ଚରଣେ ଗଲେ ଶରଣ, ଲଙ୍କାପୁରେ ବିଭୀଷଣ
ରାଜା କରାଇଲ ବଧି ସେ ଦଶମାଥ ।୫।

ମୁଁ ଅଧମ ଦୀନଜନ, କରେ ପ୍ରଭୁ ନିବେଦନ
ଭବସାଗରୁ ଉଦ୍ଧାର କର ତୁରିତ ।୬।

(ସ୍ୱର-ମଣିମା ଶୁଣିମା ହେଉ ଗରିବ ଡାକ)



# ନକର ମୋତେ ଅନାଥ

ଓଡ଼ଗ୍ରାମେ ହୋ...ଦେଖ ରଘୁନାଥଙ୍କୁ...ଓଡ଼ିଗ୍ରାମେ ହୋ
ଅନୁଜ ଲକ୍ଷ୍ମଣ ସଙ୍ଗେ ସତୀ ସୀତା
ସମ୍ମୁଖରେ ଦେଖ ହନୁମନ୍ତଙ୍କୁ, ଓଡ଼ଗ୍ରାମେ ହୋ ॥
ତାରିଛନ୍ତି କେତେ ପାପୀ, ମାରିଛନ୍ତି କେତେ ଦର୍ପି
ପାଉଛନ୍ତି ପୂଜା ଉଡ଼ାଇଣ ଧ୍ୱଜା
କୃପାନେତ୍ରେ ଚାହିଁଛନ୍ତି ଭକ୍ତଙ୍କୁ । ଓଡ଼ଗ୍ରାମେ ହୋ ।୧।
ବିଶ୍ୱାମିତ୍ର ସଙ୍ଗେ ଗଲେ ବଣେ ତାଡ଼କା ବଧିଲେ
ପଥରେ ଅହଲ୍ୟା ପଥର ହୋଇଣ
ଚାହିଁ ରହିଥିଲା ଯିବା ପଥକୁ । ଓଡ଼ଗ୍ରାମେ ହୋ ।୨।
ପିତୃସତ୍ୟ ରକ୍ଷା କରି ହେଲେ ପ୍ରଭୁ ବନଚାରୀ
ପଞ୍ଚବଟୀ ବନେ ସୀତାଙ୍କୁ ହରାଇ
ସୁଗ୍ରୀ ସଙ୍ଗେ ହୋଇଥିଲେ ମିତ୍ରକୁ । ଓଡ଼ଗ୍ରାମେ ହୋ ।୩
ସତୀ ସୀତା ଠାବ କରି ସମୁଦ୍ରେ ସେତୁ ତିଆରି
ଲଙ୍କାପୁରେ ଗଲେ ସୀତା ଉଦ୍ଧାରିଲେ
ବଧିଥିଲେ ସେ ତ ଦଶମାଥକୁ । ଓଡ଼ଗ୍ରାମେ ହୋ ।୪।
ସୀତା ଘେନି ସଙ୍ଗତରେ ଫେରିଲେ ଅଯୋଧ୍ୟାପୁରେ
ପୁତ୍ର ସମ ରାଜ୍ୟେ ପ୍ରଜାଙ୍କୁ ପାଳିଲେ
ଅଯୋଧ୍ୟାରେ ହୋଇ ଅଭିଷେକକୁ । ଓଡ଼ଗ୍ରାମେ ହୋ ।୫।
ଲୋକ ଅପବାଦେ ପୁଣି ସୀତାସତୀ ଶିରୋମଣୀ
ବାଲମିକ ବନେ ପେଶିଲେ ତକ୍ଷଣେ
ମାନ୍ୟତା ଦେଇ ସେ ଜନମତକୁ । ଓଡ଼ଗ୍ରାମେ ହୋ ।୬।
ସୁବର୍ଣ୍ଣ ସୀତା ଗଢିଲେ, ଅଶ୍ୱମେଧ ଯଜ୍ଞ କଲେ
ନ୍ୟାୟ ଧର୍ମ ମାର୍ଗେ ପ୍ରଜାଙ୍କୁ ପାଳିଲେ
ରାମରାଜ୍ୟ ଖ୍ୟାତ ଯୁଗଯୁଗକୁ । ଓଡ଼ଗ୍ରାମେ ହୋ ।୭।
ଦୟାମୟ ରଘୁନାଥ ନକର ମୋତେ ଅନାଥ
ତୁମ ନାମ ଜପି ହେଉ ଗତିମୁକ୍ତି
କୃପାନେତ୍ରେ ଦେଖ ଅରକ୍ଷିତକୁ । ଓଡ଼ଗ୍ରାମେ ହୋ ।୮।

(ସ୍ୱର-ନୀଳଚକ୍ରେ ହୋ ଦେଖ ଉଡୁଛି ବାନା)



# ଏତିକି କରୁଣା କର

ରଘୁନାଥ ହେ...ଏତିକି କରୁଣା କର,
ମୋ ପାପ ନୟନ ତୁମ ଶ୍ରୀଚରଣ
ଦେଖୁଥାଉ ନିରନ୍ତର, ରଘୁନାଥ ହେ... । (ଘୋଷା)

କେତେ କେତେ ଭକ୍ତ ହୋଇଛନ୍ତି ମୁକ୍ତ
ହେବାରୁ ଦୟା ତୁମର
ମୁଁ ଅତି ଆରତେ ଡାକୁଛି ନିରତେ
ମୋଠାରେ ସୁଦୟା କର, ରଘୁନାଥ ହେ... ।୧।

କେଉଁ ଜନ୍ମେ କିଛି ପାପ ମୁଁ କରିଛି
ଭୋଗୁଛି ଫଳ ତାହାର
ଅନାଥର ନାଥ ଆହେ ରଘୁନାଥ
ବାରେ ମୋତେ ତ୍ରାହିକର, ରଘୁନାଥ ହେ... ।୨।

ଧନ ଜନ ମାନ ଅଲୋଡ଼ା ବନ୍ଧନ
ତୁମ କୃପା ବିନା ମୋର
ଜପି ତୁମ ନାମ ଯାଉ ଏ ଜୀବନ
ଭବାର୍ଣ୍ଣବୁ କର ପାର, ରଘୁନାଥ ହେ... ।୩।

କର ହେ ସୁଦୟା ଜୀବନର ମାୟା
ତିଳେ ନାହିଁ ତ ମୋହର,
ଦିଅ ସ୍ଥାନ ବାରେ ତୁମ ଶ୍ରୀପୟରେ
ଆହେ ଦୟାର ସାଗର, ରଘୁନାଥ ହେ...।୪।

(ସ୍ୱର-ଜଗନ୍ନାଥ ହୋ କିଛି ମାଗୁନାହିଁ ତୋତେ)

❋❋❋

# ଶରଣ ଶ୍ରୀରାମ ଚରଣେ

ଶ୍ରୀରାମ ନାମ ସଦା କର ଭଜନ,
ପରମାନନ୍ଦେ ତୋର ବିତିବ ଦିନରେ, ପାଗଳା ମନ ।୧।

ଶ୍ରୀରାମ ପଦ୍ମପାଦେ ଦିଅ ତୁ ଚିତ୍ତ,
ଦିବ୍ୟଗତିକୁ ନିଶ୍ଚେ ହେବୁ ପ୍ରାପତରେ, ପାଗଳା ମନ ।୨।

ଶ୍ରୀରାମ ପରଂବ୍ରହ୍ମ ଓଁ କାର ମୂର୍ତ୍ତି,
ଜପିଲେ ଲଭିବୁ ତୁ ପରମ ଗତିରେ, ପାଗଳା ମନ ।୩।

ଶ୍ରୀରାମ ନାମ ସଦା କରତୁ ଧ୍ୟାନ
ମାନବ ଜନ୍ମ ତୋର ହୋଇବ ଧନ୍ୟରେ, ପାଗଳା ମନ ।୪।

ଶ୍ରୀରାମ ନାମ ଅଟେ ସଂସାରେ ସାର
ଭଜିଲେ ତରିଯିବୁ ଭବସାଗରରେ, ପାଗଳା ମନ ।୫।

ଶ୍ରୀରାମ ନାମ ଦୃଢ ଚିତ୍ତେ ତୁ ଜପ
ପାଇବୁ ମୁକ୍ତି ସବୁ କଟିବ ପାପରେ, ପାଗଳା ମନ ।୬।

ଶ୍ରୀରାମ ନାମ ଯେବେ ତୋ ମୁଖେ ଥିବ
ସ୍ୱର୍ଗେ ବସିବୁ ଯମ ଦଣ୍ଡ ନୋହିବ ରେ, ପାଗଳା ମନ ।୭।

ଶ୍ରୀରାମ ସୀତା ହନୁମାନ ଲକ୍ଷ୍ମଣ,
ଅଭୟ ଶ୍ରୀଚରଣେ ପଶ ଶରଣରେ, ପାଗଳା ମନ ।୮।

(ସ୍ୱର-କହଇ ମନ ଆରେ ମୋ ବୋଲ କର)



# ଏତିକି ମାଗୁଣି

ରଘୁନାଥ ହେ ଠାକୁର
ତୁମ୍ଭବିନା କେହି ଆଉ ସାହା, ନାହିଁ ମୋର...ରଘୁନାଥ ହେ... ।
ସଉମିତ୍ରୀ, ମା ଜାନକୀ ଘେନି ସଙ୍ଗତର
ଓଡ଼ଗ୍ରାମେ ପୂଜା ପାଉଅଛ ନିରନ୍ତର ।୧।

ସତ୍ୟସନ୍ଧ ଭକ୍ତପ୍ରାଣ କରୁଣାସାଗର
କରୁଣା କଣାଏ ଦିଅ ଜଗତ ଇଶ୍ୱର ।୨।

କେତେ କେତେ ଭକ୍ତ ଆସି ଦୂରଦୂରାନ୍ତର
ଧାରଣା ଦିଅନ୍ତି ଜପି ନାମକୁ ତୁମର ।୩।

ଦୟାମୟ ଦୟାକରି ବାସନା ତାଙ୍କର
ପୂର୍ଣ୍ଣ କରୁଅଛ ପ୍ରଭୁ ଦୟାର ସାଗର ।୪।

ଉପଇନ୍ଦ୍ର ଜପି କୃପା ଲଭିଲେ ତୁମର
କବିସମ୍ରାଟ ବୋଲାଇ ହୋଇଲେ ଅମର ।୫।

ଆରତେ ଡାକୁଛି ମୁହିଁ ବାରେ କୃପାକର
ନିର୍ଦ୍ଦୟ ନହୁଅ ପ୍ରଭୁ ଆହେ ରଘୁବୀର ।୬।

ସବୁ ତ ଦେଇଛ କିଛି ନାହିଁ ଦରକାର
ତୁମ୍ଭ ନାମ ଜପି ଯାଉ ଏ ଜୀବନ ମୋର ।୭।

ଚାହେଁ ନା ମୁଁ ସୁଖ ଦୁଃଖ ଆଉ ଦୁନିଆଁର
ଏତିକି ମାଗୁଣି ଆଶ୍ରା ଦିଅ ଚରଣର ।
ରଘୁନାଥ ହେ ଠାକୁର... ।୮।

(ସ୍ୱର-ଜଗବନ୍ଧୁ ହେ ଗୋସାଇଁ)

❋❋❋

# ଶ୍ରୀରଘୁନାଥ ଦର୍ଶନ

ପୂଣ୍ୟକ୍ଷେତ୍ର ଅତ୍ରୀଧାମ ଅଟେ ଓଡ଼ିଗ୍ରାମ
ଦର୍ଶନ କରିବି ସୀତା, ଶ୍ରୀରଘୁନନ୍ଦନ ॥ ପ୍ରଭୁ ଶ୍ରରାମ ହେ
ବୀର ସଉମିତ୍ର ଆଉ ପବନନନ୍ଦନ
ପଞ୍ଚଦେବ ଦେଖି ତୃପ୍ତ ହେବ ହୃଦମନ ॥ ପ୍ରଭୁ...
ସିଂହଦ୍ୱାରେ ଯାଇ ରାମ ରାମ ମୁଁ ଜପିବି
ନାଟ୍ୟ ମଣ୍ଡପରେ ବସି ଧ୍ୟାନ ମୁଁ କରିବି ॥ ପ୍ରଭୁ...
ଗମ୍ଭୀରାରେ ସିଂହାସନେ ତିନିମୂର୍ତ୍ତି ଦେଖି
ପବିତ୍ର କରିବି ମୋର ବେନି ପାପ ଆଖି ॥ ପ୍ରଭୁ...
ହାତୀଦ୍ୱାରେ ସୁବଳୟା ପର୍ବତେ ଚଢ଼ିବି
ମନ୍ଦିରର ଶୋଭା ଦେଖି ଦୁଃଖ ଭୁଲିଯିବି ॥ ପ୍ରଭୁ...
ଘୋଡ଼ାଦ୍ୱାରେ ସରସ୍ୱତୀ, ସାବିତ୍ରୀ, ଗାୟତ୍ରୀ,
ଲକ୍ଷ୍ମୀ, କାଳୀ ମନ୍ଦିରରେ ଗାଇବି ମୁଁ ସ୍ତୁତି ॥ ପ୍ରଭୁ ...
ବାଘଦ୍ୱାରେ ଦେଖିବି ମୁଁ ଝୁଲଣ ମଣ୍ଡପ
ଏକାଦଶ ଋଷି ମଧ୍ୟେ ନରସିଂହ ରୂପ ॥ ପ୍ରଭୁ...
ଭଞ୍ଜମଣ୍ଡପରେ ରାମତାରକ ଜପିବି
ସମ୍ପାତିପୃଷ୍ଠରେ ଅଷ୍ଟବୀରଙ୍କୁ ଦେଖିବି ॥ ପ୍ରଭୁ...
ମନ୍ଦିର ଚୂଡ଼ାରେ ସୁନା କଳସର ଶୋଭା
ଲାଖିଯାଏ ଆଖି ଦୃଶ୍ୟ ଅତି ମନଲୋଭା ॥ ପ୍ରଭୁ...
ରାମ ସାଗରରେ ଯାଇ କରିବି ସ୍ନାହାନ
ସୀତା କୁଣ୍ଡେ ଗାଧୋଇ ମୁଁ ହୋଇଯିବି ଧନ୍ୟ ॥ ପ୍ରଭୁ...
ସୀତା ରାମ ସଉମିତ୍ରୀ ବୀର ହନୁମାନ
ଭଜି ଭଜି ଦିବାନିଶି ଯାଉ ମୋ ଜୀବନ ॥ ପ୍ରଭୁ ...
(ସ୍ୱର- କଳାମାଣିକରେ
(ସ୍ୱର- ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ)



# ରାମନାମ ସଦା କର ଭଜନ

ଆରେ ବାଇମନ, ରାମନାମ ସଦା କର ତୁ ଭଜନ, ଆରେ ବାଇମନ
କଲେ ତହିଁ ହେଳା, ବୁଡ଼ିବ ତୋ ଭେଳା
ଆଗୁ ହୁଅ ତେଣୁ ସାବଧାନ, ଆରେ ବାଇମନ । (ଘୋଷା)
ଗଙ୍ଗାକୂଳେ ନାବେ କଇବର୍ତ୍ତ
ଭକ୍ତିଭରେ କଲେ ପାଦଧୌତ
କୁବେର ସମ୍ପତ୍ତି, ପାଇ ଗତି ମୁକ୍ତି
ଅନ୍ତିମେ ପାଇଲେ ସ୍ୱର୍ଗେ ସ୍ଥାନ, ଆରେ ବାଇମନ ।୧।
ମାତଙ୍ଗ ମହର୍ଷି ଆଶ୍ରମରେ
ଭଜିଲେ ଶବରୀ ପମ୍ପାତୀରେ
ପାଇ ଦରଶନ ଗଲେ ସ୍ୱର୍ଗଧାମ
ସାର୍ଥକ ହୋଇଲା ନାରୀ ଜନ୍ମ, ଆରେ ବାଇମନ ।୨।
ସୁଗ୍ରୀବର ଆଉ ହନୁମାନ
ଋଷ୍ୟମୁକେ କଲେ ଦରଶନ
ମିତ୍ରତା ଲଭିଣ ବାଳିକୁ ବଧିଣ
ପ୍ରାପ୍ତ କିଷ୍କିନ୍ଧ୍ୟାର ସିଂହାସନ, ଆରେ ବାଇମନ ।୩।
ଭଜିଲେ ଲଙ୍କାରେ ବିଭୀଷଣ
ଶରଣ ପଶିଲେ ଶ୍ରୀଚରଣ
ଶରଣରକ୍ଷଣ, ପ୍ରଭୁ ରଘୁରାଣ
ଦେଲେ ଲଙ୍କାପୁର ରାଜପଣ, ଆରେ ବାଇମନ ।୪।
ଭଜିଛନ୍ତି ଯିଏ ରାମନାମ
ଯାଇଛନ୍ତି ସିଏ ସ୍ୱର୍ଗଧାମ
ନ ଭଜି ରାବଣ, ସୀତାଙ୍କୁ ହରିଣ
ସବଂଶେ ହୋଇଲା ସେ ନିଧନ, ଆରେ ବାଇମନ ।୫।
(ଆହେ ନିଳଗିରୀ, ତୁମ୍ଭ ଶ୍ରୀଭୁଜେ ଦୟଣା କେରି କେରି-ବୃତ୍ତେ)



# ଓଡ଼ଗ୍ରାମେ ଆସ ଯିବା

ଓଡ଼ଗ୍ରାମେ ଆସ ଯିବା, ରଘୁନାଥଙ୍କୁ ଦେଖିବା ।
ଦ୍ୱିତୀୟ ଶ୍ରୀକ୍ଷେତ୍ର ଦେଖି, ନେତ୍ର ପବିତ୍ର କରିବା ॥

ସିଂହାସନେ ତିନିମୂର୍ତ୍ତି, ସୀତା ସହିତେ ସୌମିତ୍ରୀ ।
କମନୀୟ ରୂପକାନ୍ତି, ଦର୍ଶନେ ଶାନ୍ତି ପାଇବା ॥

ପୂର୍ବେ ସିଂହଦ୍ୱାରେ ଯାଇ, ରାମ ରାମ ହୃଦେ ଧ୍ୟାୟୀ ।
ବୀର ହନୁମାନ ଦେଖି, ଭକ୍ତିରେ ପ୍ରଣାମ ହେବା ॥

ବାମେ ଶିବ ବରଦାତା, ଦକ୍ଷିଣେ ପଞ୍ଚଦେବତା ।
ଏକାଦଶ ଋଷି ମଧ୍ୟେ, ନରସିଂହଙ୍କୁ ଦେଖିବା ॥

ଉତ୍ତରରେ ସୁବଳୟା, ପର୍ବତେ ହୋଇବା ଠିଆ ।
ମନ୍ଦିରର ଶୋଭା ଦେଖି, ଦୁଃଖ କଷ୍ଟ ଭୁଲିଯିବା ॥

ପଶ୍ଚିମେ ମା ସରସ୍ୱତୀ, ଗାୟତ୍ରୀ, କାଳୀ, ସାବିତ୍ରୀ ।
ଲକ୍ଷ୍ମୀ ମନ୍ଦିରରେ ବସି, ମାତାଙ୍କୁ ସ୍ତୁତି କରିବା ॥

ବାହାରିବା ବାଘଦ୍ୱାରେ, ଝୁଲଣ ମଣ୍ଡପ ଠାରେ ।
ସଂପାତି ପୃଷ୍ଠରେ, ଅଷ୍ଟବୀରଙ୍କୁ ନେତ୍ରେ ଦେଖିବା ॥

ଭଞ୍ଜ ମଣ୍ଡପରେ ବସି, ରାମନାମ ଘୋଷି ଘୋଷି ।
କବି ଶ୍ରେଷ୍ଠ ଉପେନ୍ଦ୍ର, ଭଞ୍ଜଙ୍କୁ ପ୍ରଣାମ ହେବା ॥

ମନ୍ଦିର ଚୂଡ଼ାରେ ଶୋଭା, ସୁବର୍ଣ୍ଣ କଳସ ଲୋଭା ।
ପବିତ୍ର ଅତ୍ରୀ ଆଶ୍ରମ, ମାଟି ମୁଣ୍ଡେ ଲଗାଇବା ॥

ଓଡ଼ଗ୍ରାମେ ଆସ ଯିବା, ରଘୁନାଥଙ୍କୁ ଦେଖିବା ।
ଦ୍ୱିତୀୟ ଶ୍ରୀକ୍ଷେତ୍ର ଦେଖି, ନେତ୍ର ପବିତ୍ର କରିବା ॥

(ସ୍ୱର- ଥକାମନ ଚାଲଯିବା)



# ସାର ଏକା ରାମ ନାମ

ଜୟ ଜୟ ରଘୁନାଥ ରାଜୀବ ନେତ୍ର
ଜୟ ମା ଜାନକୀ ଜୟ ସୁମିତ୍ରା ସୁତ ହେ ସୁମିତ୍ରା ସୁତ ।

ତବ ଶ୍ରୀପୟରେ ସଦା ରହୁ ମୋ ମନ
ତବ ନାମ ଜପି ମୋର ଯାଉ ଜୀବନ ହେ ରଘୁନନ୍ଦନ ।

ଧନ ସମ୍ପତ୍ତି ବନ୍ଧୁ କୁଟୁମ୍ବ ଘର
ମାୟା ସଂସାରେ କେହି ନୁହେଁ କାହାରରେ ଅବୁଝା ମନ ।

ସାର ଅଟଇ ଏକା ଶ୍ରୀରାମ ନାମ
ଜପ ସେ ନାମ ସଦା ଶବରୀ ସମରେ ଅବୁଝା ମନ ।

ପାଷାଣ ହୋଇ ପଡ଼ିଥିଲେ ଅହଲ୍ୟା
ଶ୍ରୀରାମ ପାଦ ସ୍ପର୍ଶେ ମୁକତି ହେଲାରେ ଅବୁଝା ମନ ।

ଗଙ୍ଗାକୂଳେ ଧୀବର ଶ୍ରୀରାମ ପାଦ
ଧୋଇ ଲଭିଲେ ଚତୁର୍ବର୍ଗ ସମ୍ପଦରେ ଅବୁଝା ମନ ।

ରାମ ନାମ ଧରି ପକ୍ଷୀ ଜଟାୟୁ
ରାମ ଦର୍ଶନଯାଏ ଲଭିଲେ ଆୟୁ ରେ ଅବୁଝା ମନ ।

ଶ୍ରୀରାମ ନାମ ଧରି ସାଗର ଡେଇଁ
ସୀତା ଠାବ କଲେ ହନୁ ଲଙ୍କାକୁ ଯାଇ ରେ ଅବୁଝା ମନ ।

ଲଙ୍କାରେ ବିଭୀଷଣ ଗଲେ ଶରଣ
ଅମର ବର ପାଇ ହେଲେ ରାଜନରେ ଅବୁଝା ମନ ।
ଶ୍ରୀରାମ ନାମ ଜପ କରି ତୁ ମୂଳ
ମାନବ ଜନ୍ମ ତୋର ହେବ ସଫଳ ରେ ଅବୁଝା ମନ ।
ଶ୍ରୀରାମ ପଦ୍ମପାଦେ ପଶ ଶରଣ
ନୋହିବ ଯମଦଣ୍ଡ ହେବ ନିର୍ବାଣରେ ଅବୁଝା ମନ ।

(ସ୍ୱର-କହଇ ମନ ଆରେ ମୋ ବୋଲକର)

❋❋❋

# ଶୁଣ ମୋ ଗୁହାରି

ଦୁର୍ବାଦଳ ଶ୍ୟାମ ମୂରତି ହେ ରାମ
ରାଜୀବ ଲୋଚନ ଜଗତ ନାଥ
ଶରଣ ଚରଣ ତଳେ ଅକିଂଚନ
କର ନାହିଁ ପ୍ରଭୁ ମୋତେ ଅନାଥ । (ଘୋଷା)

ବିଜେ ଓଡ଼ଗ୍ରାମେ ଅତ୍ରି ମୁନି ଧାମେ
ଅନୁଜ ଲକ୍ଷ୍ମଣ ସୀତା ସହିତ
ଜଗତେ ବିଖ୍ୟାତ ନାମ ରଘୁନାଥ
ଉଡୁଛି ପତିତ ପାବନ ନେତ ।୧।

ନିତି କେତେ ଭକ୍ତ ହୋଇ ଯୋଡ଼ ହସ୍ତ
କରନ୍ତି ଗୁହାରି ତୁମ୍ଭ ଅଗ୍ରତ
ନହୋଇ ବିମୁଖ ସେମାନଙ୍କ ଦୁଃଖ
କରୁଛ ମୋଚନ ହରୁଛ ଆର୍ତ୍ତ ।୨।

କି ଦୋଷ କରିଛି ନିତି ମୁଁ କାନ୍ଦୁଛି
ଝରୁଛି ନୟନୁ ନୀର ନିରତ
ଶୁଣ ମୋ ଗୁହାରି ଆହେ ଚାପଧାରୀ
ନିର୍ଦ୍ଦୟ ନହୁଅ ହେ ସୀତାକାନ୍ତ ।୩।

(ସ୍ୱର-ଚିତ୍ତ ବିନୋଦିଆ ଠାକୁର ହେ ତୁମେ ଜଗାକାଳିଆ)



# ଧ୍ୟାନକର ପରଂବ୍ରହ୍ମ ରାମ

ତରିଯିବୁ ମନ ଭବ ପାରାବାରୁ
ଭଜ ସଦା ରାମନାମ ରେ
ରାମ ପରଂବ୍ରହ୍ମ ସତ୍ୟ ସନାତନ
କର ସଦା ତାଙ୍କୁ ଧ୍ୟାନ ରେ ।୧।

ଜପନ୍ତି ସେ ନାମ ଶିବ ଭଗବାନ
ଭୁଲି ସଂସାର ବନ୍ଧନରେ
ସନ୍ଦେହ ମୋଚନ କଲେ ରଘୁରାଣ
ସନ୍ତୋଷ ଭବାନୀ ମନ ରେ ।୨।

ଗାଇ ରାମ ନାମ ବୀର ହନୁମାନ
କଲେ ଅସାଧ୍ୟ ସାଧନ ରେ
ନଭଜି ରାବଣ ହୋଇଲା ନିଧନ
ଭଜି ରାଜା ବିଭୀଷଣ ରେ ।୩।

ମୋହ ମାୟା ଜାଲେ ପଡ଼ି ସଦା ଭୋଳେ
କମାଇଲୁ ଯେତେ ଧନ୍‌ରେ
ସବୁ ହେବ ପର ସଙ୍ଗତେ ତୋହର
ଯିବ ଏକା ରାମ ନାମରେ ।୪।



# ଶ୍ରୀପୟରେ ରହୁ ମନ

ଦୁର୍ବାଦଳ ଶ୍ୟାମ ସୁନ୍ଦର ରାମ, ରଘୁନନ୍ଦନ
ସତ୍ୟ ସନାତନ ପୁରୁଷୋତ୍ତମ, ରଘୁନନ୍ଦନ
ଓଁକାର ମୂରତି ପରମବ୍ରହ୍ମ, ରଘୁନନ୍ଦନ
ସନ୍ଥ ପାଳନାର୍ଥେ ମରତେ ଜନ୍ମ, ରଘୁନନ୍ଦନ
ଦୁଷ୍ଟ ବିନାଶନ ଗର୍ବଗଞ୍ଜନ, ରଘୁନନ୍ଦନ
ଶରଣ ରକ୍ଷଣ ଭୟଭଞ୍ଜନ, ରଘୁନନ୍ଦନ
ଦୀନଦୟାଳୁ ପତିତପାବନ, ରଘୁନନ୍ଦନ
ଗତି ମୁକ୍ତି ଦାତା କୃପାନିଧାନ, ରଘୁନନ୍ଦନ
ଦୁଃଖୀ ଦୁଃଖହାରୀ ଆରତତ୍ରାଣ, ରଘୁନନ୍ଦନ
ପ୍ରଜାନୁରଞ୍ଜନ ଭକତପ୍ରାଣ, ରଘୁନନ୍ଦନ
ଦଶରଥ ନେତ୍ର ଶଙ୍ଖାଳିଧନ, ରଘୁନନ୍ଦନ
କଉଶଲ୍ୟା ଗଳାମାଳି ରତନ, ରଘୁନନ୍ଦନ
ଜନକ ନନ୍ଦିନୀ ଜୀବଜୀବନ, ରଘୁନନ୍ଦନ
ଭକ୍ତ ହନୁମାନ ହୃଦଚନ୍ଦନ, ରଘୁନନ୍ଦନ
ଅଗତିର ଗତି ହେ ନାରାୟଣ, ରଘୁନନ୍ଦନ
ଚରଣେ ଶରଣ କର କାରଣ, ରଘୁନନ୍ଦନ
ଶ୍ରୀପୟରେ ସଦା ରହୁ ମୋ ମନ, ରଘୁନନ୍ଦନ
ଗାଇ ତୁମ୍ଭ ନାମ ଯାଉ ଜୀବନ, ରଘୁନନ୍ଦନ ॥

(ସ୍ୱର-ବୃନ୍ଦାବନ ଚନ୍ଦ୍ର ନେତ୍ର ସମ୍ପତ୍ତି, ରାଧା ଗୋବିନ୍ଦ)



# ପତିତପାବନ

ଦୀନଜନ ବନ୍ଧୁ ଆହେ କୃପାସିନ୍ଧୁ
 ପତିତପାବନ ହରି ହେ,
ଅନାଥର ନାଥ ଆହେ ରଘୁନାଥ
 ଦିଅବାରେ କୃପାବାରି ହେ ।
 ଦୁଃଖ ଦୁଃଖହାରୀ ପ୍ରଭୁ
 ମୁକ୍ତକର ଏହି ମାୟାଭବୁ ହେ । ଦୁଃଖ...(୧)
ଧନଜନ ଆଉ ସଂସାର ବନ୍ଧନ
 ଲୋଡ଼ାନାହିଁ କିଛି ମୋର ହେ,
ମୋର ମୋର ବୋଲି ଦିନ ଗଲା ଚାଲି
 ଦିନେ ଜପିନି ନାମ ତୁମର ହେ ।
 ଆହେ ଅନାଥର ନାଥ,
 ବାରେ ଦେଖାଅ ମୁକତି ପଥ ହେ । ଆହେ...।୨।
ଭଜିବି ତୁମର ନାମ ମୁଁ ସର୍ବଦା
 ମଜ୍ଜିବି ତୁମ ପ୍ରେମରେ ହେ,
ଅଗତିର ଗତି ଆହେ ରଘୁପତି
 ଆଉ ପକାଅ ନାହିଁ ଭ୍ରମରେ ହେ ।
 ଆହେ ଦୀନବନ୍ଧୁ ହରି,
 ଦୁଃଖ ସାଗରରୁ କର ପାରି ହେ । ଆହେ ...।୩।
ଭୋଗ ବିଳାସ ମୋ ସାରିଦିଅ ପଛେ
 ଚରଣେ ରହୁ ମୋ ମନ ହେ,
ଗତି ମୁକ୍ତି ଦାତା ସକଳ ନିୟନ୍ତା
 ଦିଅ ମୋତେ ଦିବ୍ୟଜ୍ଞାନ ହେ ।
 ଚାହେଁ ନାହିଁ କିଛି ଆଉ,
 ନାମ ଜପି ମୋ ଜୀବନ ଯାଉ ହେ, ...।୪।
 ଚାହେଁ ନାହିଁ କିଛି ଆଉ ... ।
(ସ୍ୱର-କୃଷ୍ଣନାମ ଆଜିଠାରୁ ମୋ ବୃତ୍ତେ)



# କୃପାନେତ୍ରେ ଅନାଅ ଥରେ

ଜୟ ଜୟ ରଘୁନାଥ ଅନାଥ ଜନର ନାଥ
ଦୁଃଖୀ ଦୁଃଖହାରୀ ପ୍ରଭୁ ଆରତତ୍ରାଣ
ଭାସୁଛି ଦୁଃଖ ସାଗରେ ଜୀବନ ଶେଷ ଭାଗରେ
ତ୍ରାହିକର ଦୀନଜନେ ଗଲି ଶରଣ ।
ଦୟାକର ଦୟାସାଗର
ନିର୍ଦ୍ଦୟ ନହୁଅ ପ୍ରଭୁ ହେ ରଘୁବୀର ।୧।
କୃପାକର କୃପାସିନ୍ଧୁ ଆହେ ଦୀନଜନ ବନ୍ଧୁ
ତୁମ୍ଭ ବିନା ସାହା କେହି ନାହିଁ ମୋହର
ତୁମ୍ଭେ ନକଲେ କରୁଣା ନିରକ୍ଷ ହେବି ମୁଁ ସିନା
ଭରସା କରିଛି ଏକା ତୁମ୍ଭ ପୟର ।
କୃପାନେତ୍ରେ ଅନାଅ ଥରେ
ପଥରେ ଅବଳା କରିଅଛ ପଥରେ ।୨।
କୈବର୍ତ୍ତ ପାଦ ଧୋଇଲା ଭକ୍ତ ମଧ୍ୟେ ଖ୍ୟାତ ହେଲା
କୁବେର ସମ୍ପଦ ପ୍ରଭୁ ତାହାକୁ ଦେଲ,
ଶବରୀର ଭକ୍ତିଭରେ ଦର୍ଶନ ଦେଲ ତାହାରେ
ଗତିମୁକ୍ତି ଦେଇ ତାକୁ ସ୍ୱର୍ଗେ ପେଶିଲ ।
ସୁଗ୍ରୀବର ଗଲେ ଶରଣ,
ବାଳୀବଧି କିଷ୍କିନ୍ଧ୍ୟାରେ କଲ ରାଜନ ।୩।
ଲଙ୍କାପୁରେ ବିଭୀଷଣ ଚରଣେ ଗଲେ ଶରଣ
ରାବଣକୁ ବଧି ଲଙ୍କେ କଲ ରାଜନ
ମୁଁ ଅଧମ ଦୀନଜନ ନାହିଁ ମୋର ଭକ୍ତି ଜ୍ଞାନ
ଆରତେ ଡାକୁଛି ପ୍ରଭୁ ଦିଅ ଶରଣ ।
ଶ୍ରୀଚରଣେ ମୋ ନିବେଦନ
ମରଣ କାଳରେ ବାରେ ଦେବ ଦର୍ଶନ ।୪।
(ସ୍ୱର-ଜୟ ଜୟ ଜଗନ୍ନାଥ ଚଢି ନନ୍ଦିଘୋଷ ରଥ
ଅନ୍ତର୍ଯ୍ୟାମୀ ଅନ୍ତର୍ଗତ ବାରତା ଜାଣ ।)
(ସ୍ୱର- ମଙ୍ଗଳେ ଅଇଲା ଉଷା) ❋❋❋

# ଭଜ ତୁହି ରାମ ନାମ

ଭଜ ତୁହି ରାମ ନାମ ରେ ବାଇମନ,
ରାମ ନ ଭଜିଲେ ସଂସାର ସାଗରେ
ବୁଡ଼ିଭୋଗିବୁ କଷଣ ରେ ବାଇମନ । (ଘୋଷା)

ଗଉତମ ଶାପେ ପାଷାଣୀ ଅହଲ୍ୟା
ରାମ ପାଦ ସ୍ପର୍ଶେ ମୁକତି ଲଭିଲା
ସେ ଚରଣ କର ଧ୍ୟାନ ରେ ବାଇମନ ।୧।

ଭକ୍ତିରେ ଧୀବର ଧୋଇଲା ପୟର
ଚତୁର୍ବର୍ଗ ପାଇ ଗଲା ସ୍ୱର୍ଗପୁର
ପୁରୁଷାର୍ଥ ନର ଜନ୍ମରେ ବାଇମନ ।୨।

ପମ୍ପାସର ତୀରେ ମାତଙ୍ଗ ମହର୍ଷି
ଆଶ୍ରମେ ଶବରୀ ଭଜିଥିଲା ବସି
ଦର୍ଶନେ ପ୍ରାପ୍ତ ଦିବ୍ୟଧାମ ରେ ବାଇମନ ।୩।

ରାମ ପରଂବ୍ରହ୍ମ ଚିହ୍ନି ହନୁମାନ
ସେ ପାଦପଙ୍କଜେ ପଶିଲେ ଶରଣ
କଲେ ସେ ଅସାଧ୍ୟ ସାଧନ ରେ ବାଇମନ ।୪।

ସୁଗ୍ରୀବ ଶରଣ ଗଲେ ଶ୍ରୀଚରଣ
ମିତ୍ର ହୋଇ ବାଳୀ ବଧିଲେ ଶ୍ରୀରାମ
କଲେ କିଷ୍କିନ୍ଧ୍ୟା ରାଜନରେ ବାଇମନ ।୫।

ଲଙ୍କାରେ ରାବଣ ସୀତାଙ୍କୁ ହରଣ
କରି ସେ ବରିଲା ସର୍ବଂଶେ ମରଣ
ଭଜି "ରାଜା" ବିଭୀଷଣ ରେ ବାଇମନ
ଭଜ ତୁହି ରାମ ନାମ ରେ ବାଇମନ ।୬।



# ଦୟାକର ଦୟାମୟ

ସୁଖ ଦେବ ବୋଲି ଭାବିଥିଲି ପ୍ରଭୁ
ଲଦିଦେଲ ଦୁଃଖ ଭାର
ସହି ମୁଁ ପାରେନା ଜୀବନ ଯନ୍ତ୍ରଣା
ଝରେ ସଦା ଲୁହଧାର ।୧। ମହାପ୍ରଭୁ

ଯେତେ ବୁଝାଇଲେ ବୁଝେନା ମୋ ମନ
ଦୟାକର ଦୟାମୟ
ନଦିଅ ପଛକେ ସୁଖ ଏ ଜୀବନେ
ଶ୍ରୀ ପୟରେ ରହୁ ଲୟ ।୨। ମହାପ୍ରଭୁ

ଦିଅ ପ୍ରଭୁ ଯେତେ ଦୁଃଖ ଦେବ ମୋତେ
ସେ ପାଇଁ କରୁନି ମନା
କେବଳ ଏତିକି ମାତ୍ର ମୋ ବିନତି
କୃପା ନେତ୍ରେ ଥରେ ଅନା ।୩। ମହାପ୍ରଭୁ

ଭଜି ଭଜି ତୁମ ନାମ ମହାପ୍ରଭୁ
ମୋ ଜୀବନ ଯାଉ ବିତି
କରିଛି ଭରଷା ଶ୍ରୀଚରଣେ ଆଶ୍ରା
ଦିଅ ମୋତେ ରଘୁପତି ।୪। ମହାପ୍ରଭୁ

(ସ୍ୱର-ଭଜୁ କିନା ରାମ ନାମରେ କୁମର)



# ଆତ୍ମନିବେଦନ

ଜଗତର କର୍ତ୍ତା ସକଳ ନିଅନ୍ତା
ପ୍ରଭୁ ଦୟାମୟ ହରି
କି ମାଗିବି ଆଉ ସବୁତ ଦେଇଛ
ଭିକ୍ଷାଥାଳ ପୂର୍ଣ୍ଣ କରି ହେ ।୧। ମହାପ୍ରଭୁ

ମାଗୁନାହିଁ ଧନ ମାଗୁ ନାହିଁ ଜନ
ମାଗୁ ନାହିଁ ସୁଖଶିରୀ
ଦିଅ ପଛେ ପ୍ରଭୁ ଦୁଃଖ କଷ୍ଟ ସବୁ
ଭବାର୍ଣ୍ଣବୁ କର ପାରି ହେ ।୨। ମହାପ୍ରଭୁ

ବିତି ଯାଉ ଦିନ ଦୁଃଖେ ମୋ ଜୀବନ
ଆଖିରୁ ଝରାଇ ଲୁହ
ଜଗତର ନାଥ ଆହେ ରଘୁନାଥ
ଶ୍ରୀଚରଣେ ଆଶ୍ରା ଦିଅ ହେ ।୩। ମହାପ୍ରଭୁ

କିଛି ଆଣି ନାହିଁ କିଛି ନେବି ନାହିଁ
ଆସିଛି ମୁଁ ଏକା ହୋଇ
ଚାଲିଯିବି ଏକା ଦୁନିଆରୁ ପ୍ରଭୁ
ତୁମ ନାମ ଗାଇ ଗାଇ ।୪। ମହାପ୍ରଭୁ

ନଦେଖନ୍ତୁ କେହି ନ ଜାଣନ୍ତୁ କେହି
ନ କରନ୍ତୁ କେହି ଦୁଃଖ
ଜୀବନ ମୋ ଯାଉ ଆହେ ମହାବାହୁ
ଧ୍ୟାୟୀ ତୁମ ପଦ୍ମମୁଖ ହେ ।୫। ମହାପ୍ରଭୁ

(ସ୍ୱର- ଭଜୁ କିନା ରରାମ ନାମରେ କୁମର)



# ଏତିକି କାମନା

ବିପଦରେ ତୁମ କଥା ମନେପଡ଼େ ପ୍ରଭୁ ।
ସମ୍ପଦେ ମୁଁ ଭୋଳ ହୋଇ ଭୁଲିଯାଏ ସବୁ ॥

ଦୁଃଖ ପଛେ ଦିଅ ପ୍ରଭୁ ଯେତେ ଇଚ୍ଛା ସେତେ ।
ଅନୁକ୍ଷଣେ ତୁମ ଚିନ୍ତା ରହୁ ହୃଦଗତେ ।
ଭଜିବାକୁ ତୁମନାମ ଆସୁ ନାହିଁ ମନେ ।
ବଞ୍ଚିବାକୁ ଇଚ୍ଛା ସଦା ସୁଖେ ଏ ଜୀବନେ ॥

ସାର ଏକା ସଂସାରରେ ତୁମ ନାମ ପ୍ରଭୁ ।
ଅସାର ଏ ଦୁନିଆର ଯେତେ ଯାହା ସବୁ ॥

ଚାହେଁନା ମୁଁ ସୁଖ ପ୍ରଭୁ ଚାହେଁନା ମୁଁ ଧନ ।
ଅନ୍ତିମ ସମୟେ ଶ୍ରୀଚରଣେ ରହୁ ମନ ॥

ଅକସ୍ମାତେ ଏ ପିଣ୍ଡରୁ ଯାଉ ଜୀବ ଛାଡ଼ି ।
ନରକ ଯାତନା ଭୋଗ ନୋହୁ ରୋଗେ ପଡ଼ି ॥

ଏତିକି କାମନା ପ୍ରଭୁ କର ମୋ ପୂରଣ ।
ସୁଦୟା କରିବ ବାରେ ଶ୍ରୀରଘୁନନ୍ଦନ ॥



# ତୁମଠାରେ ରହୁ ଭକ୍ତି

ତୁମ ପାଦତଳେ ମୋ ଆଖିର ଲୁହ
ନିତି ମୁଁ ଢାଳିଲି ପ୍ରଭୁ
ଦେଲ ଖାଲି ମୋତେ ଦୁନିଆର ଯେତେ
ଦୁଃଖ ଓ ଯନ୍ତ୍ରଣା ସବୁ ।୧।

ଦୁଃଖ ଯଦି ଦେବ ଦିଅ ପ୍ରଭୁ ମୋତେ
ସେ ପାଇଁ କରୁନି ମନା
ଜନମେ ଜନମେ ଜପୁଥିବି ନାମ
ଏତିକି ମାତ୍ର କାମନା ।୨।

ଦୁଃଖକୁ ଦୁଃଖ ମୁଁ ନଭାବିବି ପ୍ରଭୁ
ସହିବାକୁ ଦିଅ ଶକ୍ତି
ଦିଅ ମୋତେ ଧୈର୍ଯ୍ୟ ନକର ଅଧୈର୍ଯ୍ୟ
ତୁମଠାରେ ରହୁ ଭକ୍ତି ।୩।

ମାଗୁନାହିଁ ମୁହିଁ ସ୍ୱର୍ଗ ସୁଖ ପ୍ରଭୁ
ମାଗୁନାହିଁ ଦିଅ ଧନ
ମାଗୁଛି କେବଳ ତୁମରି ଚରଣେ
ରହୁ ସଦା ମୋର ମନ ।୪।



# ଚରଣେ ପ୍ରଣତି

ତୁମେ ନାହିଁ ବୋଲି ଭାବି ମୁଁ ପାରେନା
ସବୁଠାରେ ଅଛ ତୁମେ
ତୁମେ ତ ପୁରିଛ ଅନ୍ତରେ ବାହାରେ
ଯହିଁ ଦେଖେ ତହିଁ ତୁମେ ।୧।

ତୁମେ ମୋ ପ୍ରାଣର ପ୍ରତିଟି ବିନ୍ଦୁରେ
ଭରିଛ ଜୀବନୀ ଶକ୍ତି,
ତୁମ ଦାନ ପ୍ରଭୁ ବୁଝି ମୁଁ ପାରେନା
କରେନା ତୁମକୁ ଭକ୍ତି ।୨।

ତୁମେ ତ ଗଢ଼ିଛ ଦୁନିଆଁରେ ସବୁ
ମୋ ପାଇଁ ବଞ୍ଚିବା ରାହା
ତୁମକୁ ନବୁଝି ନିନ୍ଦା ମୁଁ କରୁଛି
ତଥାପି ହେଉଛ ସାହା ।୩।

ତୁମରି ସନ୍ତାନ ମୁଁ ମୂଢ଼ ଅଜ୍ଞାନ
କ୍ଷମା ଦିଅ କ୍ଷମା ଦିଅ
ତୁମରି ଚରଣେ ପ୍ରଣତି ଢାଳୁଛି
ମୋ ଠାରେ ସଦୟ ହୁଅ ।୪।
ମହାପ୍ରଭୁ, ମୋ ଠାରେ ସଦୟ ହୁଅ ॥



# ଦିଅ ଦରଶନ

ରଘୁନନ୍ଦନ ହେ...କଲ ମୋତେ ହୀନିମାନ
କିବା ଦୋଷ କଲି ନିତି ମୁଁ କାନ୍ଦିଲି
ଭରିଲା ନିରେ ନୟନ... । (ଘୋଷା)
ହୃଦୟ ବେଦନା ସହି ମୁଁ ପାରେନା
ଅଥୟ ସଦା ମୋ ମନ
ଦିଅ ଦରଶନ ଆହେ ରଘୁରାଣ
ଏତିକି ମୋ ନିବେଦନ, ରଘୁ... ।୧।

ସବୁ ମୁଁ ଛାଡ଼ିଲି ପାଶରେ ରହିଲି
ପାଇବି ବୋଲି ଦର୍ଶନ
ଏ କି ଫଳ ତାର ଆହେ ରଘୁବୀର
ନିଅ ଶୀଘ୍ର ଏ ପରାଣ ।୨।

ଦୁନିଆରେ ମୋର ନାହିଁ ଦରକାର
ଚାହେଁନା କିଛି ମୁଁ ଆନ,
ଭଜି ତୁମ ନାମ ଯାଉ ଏ ଜୀବନ
ଆହେ ପଙ୍କଜବଦନ ।୩।
ରଘୁନନ୍ଦନ ହେ, କଲ ମୋତେ ହୀନିମାନ ॥

(ସ୍ୱର-ଜଗାକାଳିଆରେ କଲୁ ମତେ ସାତପର)



# ସେଇ ମୋର ସ୍ୱର୍ଗ ସୁଖ

ଜୀବନଟା ସାରା ଦୁଃଖ ଓ ଯନ୍ତ୍ରଣା
ଭରିଦେଲ ଯଦି ମୋର
କାନ୍ଦି କାନ୍ଦି ଯଦି ଝରାଇଲି ସଦା
ମୋ ନୟନୁ ନୀରଧାର ।
ବ୍ୟଥା ଓ ବେଦନା ହେଲା ଯଦି ମୋର
ଜୀବନର ସହଚର
ତେବେ କୁହ ପ୍ରଭୁ କାହିଁକି ତୁମକୁ
ଡାକିବି ହୋଇ ଆତୁର, ହେ ମହାପ୍ରଭୁ ।୧।
ଧନ ଜନ ମାନ ସଂସାର ବନ୍ଧନ
ଲୋଡ଼ା ନାହିଁ କିଛି ମୋର
ହୁଅ ପଛେ ବାମ ଭଜି ରାମ ରାମ
ବୁଲିବି ଦ୍ୱାର ଦୁଆର ।
ନାହିଁ ମୋର ଦୁଃଖ ରଖ ବା ନରଖ
ନହେବି ତିଳେ କାତର
ସଦା ତୁମ ନାମ କରି ଗଣ୍ଠିଧନ
ଯାଉ ଏ ଜୀବନ ଛାର, ହେ ମହାପ୍ରଭୁ ।୨।
ଦୁଃଖ ଯଦି ଦେବ ଦିଅ ଯେତେ ଇଚ୍ଛା
ସେ ପାଇଁ ନାହିଁ ମୋ ଦୁଃଖ
ସବୁ ମୁଁ ସହିବି, ତେବେ ବି ଡାକିବି
ତୁମ ଇଚ୍ଛା ମାର, ରଖ ।
ଜପି ସୀତାରାମ ବିତି ଯାଉ ଦିନ
ହେ ପ୍ରଭୁ ପଙ୍କଜ ମୁଖ
ସେଇ ମୋର ଶାନ୍ତି ସେଇ ମୋର ତୃପ୍ତି
ସେଇ ମୋର ସ୍ୱର୍ଗ ସୁଖ, ହେ ମହାବାହୁ ।୩।

❋❋❋

# କର ପରିତ୍ରାଣ

କମଳ ଲୋଚନ ଚରଣ କମଳେ
ରହୁ ସଦା ମୋର ମନ
ସେ ମୂର୍ତ୍ତି ଦର୍ଶନ କରି ନିତିଦିନ
ବିତି ଯାଉ ମୋ ଜୀବନ ।୧।

ନ ଜାଣେ ଭକତି ମୁହିଁ ମୂଢମତି
ଦିଅ ପ୍ରଭୁ ସଦ୍‌ଜ୍ଞାନ
ତୁମ ନାମ୍ ଭଜି ତୁମ ପ୍ରେମେ ମଜ୍ଜି
ଯାଉ ମୋ ପିଣ୍ଡୁ ପରାଣ ।୨।

ଅସାର ସଂସାର କେହି ନୁହେଁ କାର
ସବୁ ତ ତୁମର ଦାନ
ଯାହା ମୁଁ କରିଛି ଯାହା କରୁଅଛି
ତୁମ ନିର୍ଦ୍ଦେଶ ପାଳନ ।୩।

ସବୁ ଦୋଷ ମୋର ପ୍ରଭୁ କ୍ଷମାକର
ଜାଣେନା ମୁଁ ପାପ ପୂଣ୍ୟ
ଅଧମ ସନ୍ତାନ ମୁହିଁ ଦୀନହୀନ
କର ମୋତେ ପରିତ୍ରାଣ ।୪।

❋❋❋

# ମୁଖେ ଆସୁ ରାମ ନାମ

ଦୁଃଖ ଦିଅ ନାହିଁ ସୁଖ ଦିଅ ପ୍ରଭୁ
ଏକଥା ମୁଁ କହୁନାହିଁ
ପୂର୍ବ ଜନମର ପାପ ପୂଣ୍ୟ ଫଳ
ଅବଶ୍ୟ ଭୋଗିବି ମୁହିଁ ।୧।

ବିଷୟା ଜଞ୍ଜାଳେ ମଜି ସୁଖ ଭୋଳେ
ଭଜିନି ତୁମକୁ ଦିନେ
ମୁଁ ମୂଢ଼ ଅଜ୍ଞାନ ମୋ ଚଞ୍ଚଳ ମନ
ସୁଖ ଇଚ୍ଛେ ଅନୁକ୍ଷଣେ ।୨।

ଦିଅ ନାହିଁ ସୁଖ ଦିଅ ପଛେ ଦୁଃଖ
ଭଜିବି ତୁମରି ନାମ
ମୋ ହୃଦ ମନ୍ଦିରେ ବସ ପ୍ରଭୁବାରେ
ନବ ଦୁର୍ବାଦଳ ଶ୍ୟାମ ।୩।

ସହିବାକୁ ଶକ୍ତି ଦିଅ ରଘୁପତି
ଯନ୍ତ୍ରଣା ଯାତନା ଯେତେ
ନୟନର ନୀରେ ତୁମ ଶ୍ରୀପୟରେ
ଧୋଇବାକୁ ଦିଅ ମୋତେ ।୪।

ପ୍ରାଣ ଯେବେ ମୋର ଛାଡ଼ିବ ଶରୀର
ମୁଖେ ଆସୁ ରାମ ନାମ
ଶ୍ରୀଅଙ୍ଗର ଛଡ଼ା ତୁଳସୀ ପାଖୁଡ଼ା
ପାଇଯାଉ ମୋ ଜୀବନ ।୫।



# ତୁମକୁ ନଦେଖିଲେ ଦିନେ

ତୁମକୁ ନ ଦେଖିଲେ ଦିନେ ହେ ପ୍ରଭୁ
ମୋତେ ଭୋକ ନଲାଗଇ
ମୋତେ ଶୋଷ ନଲାଗଇ
ମୋତେ ନିଦ ନଲାଗଇ କଦାଚନେ ହେ, ପ୍ରଭୁ ।
ତୁମ ରୂପ ମାଧୁରିମା, ତୁମ କୀରତି ମହିମା
ତୁମର କଞ୍ଜବଦନ, ତୁମର ପଦ୍ମଲୋଚନ
ଦୃଷ୍ଟି ପଥେ ମୋ ନାଚଇ
ଦିବାନିଶି ମୁଁ ଭାବଇ
ନିତି ଇଚ୍ଛା ତମ ଆଳତୀ ଦର୍ଶନେ ହେ, ପ୍ରଭୁ ।୧।

ନବ ଦୁର୍ବାଦଳ ଶ୍ୟାମ, କାଣ୍ଡକୋଦଣ୍ଡ ଧାରଣ
ଦନୁଜ ଦର୍ପ ଗଞ୍ଜନ, ଭକତ ମନ ରଞ୍ଜନ
ଆହେ ଦୟାର ସାଗର
ବାରେ କୃପା ମୋତେ କର
ମନରହୁ ସଦା ତବଧ୍ୟାନେ ହେ, ପ୍ରଭୁ ।୨।



# ମାନୁଛି ମୁଁ ପ୍ରଭୁ ବୋଲି

ଦଶରଥ ସୁତ ରାମ ନୁହଁ ତୁମେ
କାଠରେ ଗଢା ମୂରତି
ମଉନେ ବସିଛ କଥା ନକହୁଛ
ବୋଲି ଅନେକେ କହନ୍ତି ।୧।
କରିଥିଲ କିଛି ଭଲ କାମ କେବେ
ଏବେ ତ କରୁନ କିଛି
ମଣିଷକୁ ତେଣୁ ଭଗବାନ କହି
କେତେ କେ ପୂଜା କରୁଛି ।୨।
ଯାବତ କୁକର୍ମ କରି ବି ମାନବ
ଭାବେ ସେ ଏକା ତୁଳସୀ
ତେଜିଣ ଓଁକାର ମୁଁକାର ହୁଁକାର
କରେ ଗର୍ବେ ଦିବାନିଶି ।୩।
ହିନ୍ଦୁର ପୁରାଣ ହିନ୍ଦୁ ରାମାୟଣ
ହିନ୍ଦୁ ଗୀତା ଭାଗବତ
ହିନ୍ଦୁର ସଂସ୍କୃତି ହିନ୍ଦୁ ପରମ୍ପରା
ହିନ୍ଦୁ ଅସ୍ମି ମଜ୍ଜାଗତ ।୪।
ଭକ୍ତି ଅନୁସାରେ ଫଳ ଦିଅ ତୁମେ
ଏ କଥା ଅଛି ପ୍ରମାଣ
ଅହଂକାର ଗର୍ବ କରିଦିଅ ଖର୍ବ
ଅନେକ ଆଜି ରାବଣ ।୫।
ପ୍ରଭୁ ବୋଲି ତୁମେ ମାନୁଛି ମୁଁ ପ୍ରଭୁ
ମାନୁ ବା ନମାନୁ କିଏ
କାଠରେ ତିଆରି ମୂର୍ତ୍ତିଟିଏ ବୋଲି
କହିଲେ କହନ୍ତୁ ଯିଏ ।୬।
ମୁଁ ମୂଢ ଅଜ୍ଞାନ ନାହିଁ ଭକ୍ତି ଜ୍ଞାନ
ଚରଣେ ଦିଅ ଶରଣ
କରିଛି ବିଶ୍ୱାସ ନ କର ନିରାଶ
ହେଉ ମୋ ସୁଖ ମରଣ ।୭। ❋❋❋

# ରାମ ରାମ ଭଜୁଥା

ରାମ ରାମ ତୁ ଭଜୁଥାରେ
ମନ୍ଦିରରେ ନିତି ନିତି (୨ଥର)
ଅନ୍ତରେ ଯଦି ତୋ ଭରା ହିଂସା ଦ୍ୱେଷ
ପାଇବୁ କି କେବେ ଶାନ୍ତି ? ରାମ ରାମ ।୧।

ଅନୀତି ଦୁର୍ନୀତି ପଥରେ ତୁ ମାତି
ଅରଜି ଧନ ସମ୍ପତ୍ତି
କରି ଘରଦ୍ୱାର ବୋଲୁ ମୋର ମୋର
କେହି ତୋହର ନୁହଁନ୍ତି । ରାମ ରାମ ।୨।

ଭାଇ ବନ୍ଧୁ ପର ପୁତ୍ର କନ୍ୟା ଦାର
ଭାବୁଛୁ ନିଜର ଅତି
କରୁଅଛୁ ଗର୍ବ ହୋଇଯିବୁ ଖର୍ବ
ଅଚିରେ ତୁ ମୂଢମତି । ରାମ ରାମ ।୩।

ଭକ୍ତିଭାବ ଛାଡ଼ି ଆତ୍ମ ଗର୍ବେ ବୁଡ଼ି
କରୁଅଛୁ ଯେତେ ବୃତ୍ତି
ସବୁ ଦେଖୁଛନ୍ତି ସବୁ ଜାଣୁଛନ୍ତି
ବୁଝିବେ ସେ ରଘୁପତି । ରାମ ରାମ ।୪।

ଗର୍ବ ଅହଂକାର ମନୁ କରି ଦୂର
ସ୍ନେହ ପ୍ରେମ ଦୟା ଭକ୍ତି
କଲେ ତୁ ଆଶ୍ରୟ ଲଭିବୁ ନିଶ୍ଚୟ
ଅନ୍ତିମେ ପରମ ଗତି । ରାମ ରାମ ।୫।

(ସ୍ୱର-ଅନା ଅନା ଝଲକଇ ରେ)



# ସର୍ବସ୍ୱ ଦେଲି ଅରପି

ଯେତେ ଦୁଃଖ ଦେବ ସବୁ ମୁଁ ସହିବି
ଦିଅ ପ୍ରଭୁ ମୋତେ ଧୈର୍ଯ୍ୟ
ମୋ ଆଖି ଲୁହରେ ଧୋଇବି ଚରଣ
ନକର ଆଉ ଅଧୈର୍ଯ୍ୟ ।୧। ମହାପ୍ରଭୁ...

କାନ୍ଦି କାନ୍ଦି ସଦା ବିତାଇବି ଦିନ
ହେବ ତୁମେ ଯଦି ଖୁସି
ଦୁଃଖ ନାହିଁ ପ୍ରଭୁ ସେ ପାଇଁ ମୋ ତିଳେ
ନପାରିଲେ କେବେ ହସି ।୨। ମହାପ୍ରଭୁ

ନକର କରୁଣା ହେବ ଯଦି ଊଣା
ସେ ପାଇଁ ନାହିଁ ମୋ ଦୁଃଖ
ଭୁଲିଯିବି ବୋଲି ଭାବୁଅଛ ଯଦି
ଦିଅ ନାହିଁ ମୋତେ ସୁଖ ।୩। ମହାପ୍ରଭୁ

ଯାହା ଇଚ୍ଛା ତୁମ କର ହେ ଠାକୁର
ଆପତ୍ତି ନାହିଁ ମୋ କିଛି
ଧ୍ୟାୟୀ ତୁମ ନାମ ଯାଉ ଏ ଜୀବନ
ଏତିକି ମାତ୍ର ଚାହୁଁଛି ।୪। ମହାପ୍ରଭୁ

ଏତିକି ଠାକୁର ନିବେଦନ ମୋର
ତୁମ ନାମ ଜପି ଜପି
ଜୀବନ ମୋ ଯାଉ ଆହେ ମହାବାହୁ
ସର୍ବସ୍ୱ ଦେଲି ଅରପି ।୫। ମହାପ୍ରଭୁ...

(ସ୍ୱର- ପତିତଜନଙ୍କୁ ଉଦ୍ଧାରିବା ପାଇଁ ଉଡ଼ାଇ ଅଛ ପତାକା)

❋❋❋

# ବାବା ହେ ଲଡୁକେଶ୍ୱର

ଜଗତର ପିତାମାତା ହେ ପରମେଶ୍ୱର
ସୃଷ୍ଟିକର୍ତ୍ତା ଅଟ ତୁମେ ଏ ସାରା ବିଶ୍ୱର
ବାବା ହେ ଲଡୁକେଶ୍ୱର
ବାନା ଉଡ଼ାଇଛ ପ୍ରଭୁ ଶରଣ କୂଳରେ ।୧।
ଶତ ଶତ ଭକ୍ତ ସଦା ତୁମ୍ଭ ନାମ ଜପି
ସିଦ୍ଧିଲାଭ କରିଛନ୍ତି ଜଣାଇ ବିନତି
ସତ୍ୟ ଶିବ ହେ ସୁନ୍ଦର
ଏ ଅଧମ ଜନେ ପ୍ରଭୁ ବାରେ କୃପାକର ।୨।
ତୁମେ ବ୍ରହ୍ମା, ତୁମେ ବିଷ୍ଣୁ, ତୁମେ ମହେଶ୍ୱର
ତୁମେ ଲକ୍ଷ୍ମୀ, ସରସ୍ୱତୀ, ପାର୍ବତୀ ଆବର
ତୁମେ ସୂର୍ଯ୍ୟ ଚନ୍ଦ୍ର ତାରା
ଆକାଶ, ବତାସ ତୁମେ ଅଟ ଜଳଧାରା ।୩।
ଦୃଷ୍ଟିପଥେ ଯାହା ଦେଖେ ସବୁ ତୁମ ସୃଷ୍ଟି
କିଦେଇ ପୂଜିବି ପ୍ରଭୁ କିବା ମୋର ଶକ୍ତି
ନୟନରୁ ନୀରଢାଳି
ଶ୍ରୀଚରଣ ଧୋଇ ଦେବି ଭକ୍ତି ପୁଷ୍ପାଞ୍ଜଳି ।୪।
ଏଇ ମୋର ପୂଜା ପ୍ରଭୁ ଏଇ ମୋର ଭକ୍ତି
ଏ ମାୟା ସଂସାରୁ ବାରେ ଦିଅ ମୋତେ ମୁକ୍ତି
କିଛି ଚାହେଁ ନା ମୁଁ ଆଉ
ହୃଦୟେ ମୋ ତୁମ ଚିନ୍ତା ଅନୁକ୍ଷଣ ରହୁ ।୫।
(ସ୍ୱର- ନିର୍ମଳ ଚନ୍ଦ୍ର ମଣ୍ଡଳ ସରଦେ ବିରାଜି)

ବି.ଦ୍ର-ନୟାଗଡ଼ ଜିଲ୍ଲାର ଶରଣକୁଳ ଠାରେ ବିରାଜିତ ଶ୍ରୀ ଶ୍ରୀ ଲଡୁକେଶ୍ୱର ମହାଦେବ ମନ୍ଦିର ଏକ ପ୍ରାଚୀନ ଶୈବପୀଠ ରୂପେ ପ୍ରସିଦ୍ଧ ।



# ଚରଣେ ରହୁ ମୋ ମନ

ହେ ଦୁତୀକେଶ୍ୱର
ଦୀନ ଦୁଃଖ ହାରି ପ୍ରଭୁ ହେ ମହେଶ୍ୱର
ଏ ଭବ ସାଗରୁ ତାର ଶିବଶଙ୍କର, ହେ ... (ଘୋଷା)
ଶୂଳିଆ ପର୍ବତେ ରହିଛି ନିଭୃତେ
ଭକତଙ୍କ ଆର୍ତ୍ତ ଶୁଣଉଛ ତ କେତେ,
ମୁଁ ଜଣେ ପାତକୀ ଡାକ ଶୁଣ କର୍ତ୍ତର, ହେ...।୧।

ମହା ଭାଗ୍ୟବତୀ ସେ କନ୍ଧୁଣୀ ଦୁତୀ
ଦରଶନ ପାଇ ହେଲା ସ୍ୱର୍ଗ ଗତି
ତା ନାମେ ବିଖ୍ୟାତ ହୋଇ କଲ ଅମର, ହେ ...।୨।

କେତେ ଭକ୍ତରାଜି ତୁମ୍ଭ ନାମ ଭଜି,
ପାଇଛନ୍ତି ସିଦ୍ଧି ଜଣାଇ ଅରଜି
ମୁଁ ଅତି ଆରତେ ଡାକେ କର ଉଦ୍ଧାର, ହେ ...।୩।

ମନ ସଦା ଭ୍ରମେ ମୋହ ମାୟା କର୍ମେ
ଭଜିବାକୁ ଦିନେ ଆସେ ନାହିଁ ମନେ
ଜୀବନ ମୋ ଯାଉ ଜପି ନାମ ତୁମ୍ଭର, ହେ...।୪।

କରିବି ଭକତି ଦିଅ ହେ ସୁମତି
ବ୍ୟଥିତ ଅନ୍ତରେ କରୁଛି ମିନତୀ
ଶ୍ରୀଚରଣେ ରହୁ ମନ ମୋ ନିରନ୍ତର, ହେ... ।୫।

ବି.ଦ୍ର: ଓଡ଼ଗାଁ ଠାରୁ ବାହାଡ଼ାଝୋଲା ଯିବା ପରେ ଛଅ କି.ମି ଦୂର ଜାମୁପାଟଣା ଗ୍ରାମ ନିକଟରେ ଶ୍ରୀ ଶ୍ରୀ ଦୁତିକେଶ୍ୱର ମହାଦେବଙ୍କର ମନ୍ଦିର ଅବସ୍ଥିତ ।
(ସ୍ୱର-ହେ ଚକାନୟନ)



# ଫୁଲଟିଏ ମୋତେ କର

ଫୁଲଟିଏ ମୋତେ କର ମହାପ୍ରଭୁ
ଫୁଲଟିଏ ମୋତେ କର
ତୁମ ଶ୍ରୀଅଙ୍ଗରେ ମଣ୍ଡି ହେଉଥିବି
ଦିଅ ମୋତେ ଏହି ବର ।୧।

ଫୁଲଟିଏ ମୋତେ କର ମହାପ୍ରଭୁ
ଫୁଲଟିଏ ମୋତେ କର
ତୁମ ଗଳାହାର ହୋଇ ସଦା ହେଉ
ସାର୍ଥକ ଜନ୍ମ ମୋହର ।୨।

ଫୁଲଟିଏ ମୋତେ କର ମହାପ୍ରଭୁ
ଫୁଲଟିଏ ମୋତେ କର
ଚଉଦିଗେ ବାସ୍ନା ମହକି ଉଠୁ ମୋ
ସୌରଭରେ ନିରନ୍ତର ।୩।

ଫୁଲଟିଏ ମୋତେ କର ମହାପ୍ରଭୁ
ଫୁଲଟିଏ ମୋତେ କର
ରୂପ ରଙ୍ଗ ଗନ୍ଧେ ମଧୁମୟ ହେଉ
ପରିବେଶ ପୃଥିବୀର ।୪।

ଫୁଲଟିଏ ମୋତେ କର ମହାପ୍ରଭୁ
ଫୁଲଟିଏ ମୋତେ କର
ହିଂସା, ଦ୍ୱେଷ, ଭେଦଭାବ ଦୂର ହେଉ
ପ୍ରେମ ଆଦର୍ଶରେ ମୋର ।୫।

ଫୁଲଟିଏ ମୋତେ କର ମହାପ୍ରଭୁ
ଫୁଲଟିଏ ମୋତେ କର
ମହତ୍ ଗୁଣରେ ମହତ୍ କାର୍ଯ୍ୟରେ
ହେବି ମୁଁ ସଦା ତତ୍ପର ।୭।

ଫୁଲଟିଏ ମୋତେ କର ମହାପ୍ରଭୁ
ଫୁଲଟିଏ ମୋତେ କର
ସବୁରି କାର୍ଯ୍ୟରେ ଲୋଡ଼ା ମୁଁ ହୋଇବି
ଭୁଲି ପର ଆପଣାର ।୭।



# ଦୁର୍ଗତି ନାଶିନୀ ମା'ଦୁର୍ଗେ

## (ଦକ୍ଷିଣ କାଳୀ ଜଣାଣ)

ଦୁର୍ଗତି ନାଶିନୀ ଦୁର୍ଗେ ମାଆ ଗୋ କାଳିକା
ତୁମେ ହରପ୍ରିୟା ଗୌରୀ ତୁମେ ମା'ଚଣ୍ଡିକା ।
ତୁମେ ଉମା, ମାହେଶ୍ୱରୀ, ତୁମେ ମା' ସର୍ବାଣୀ,
ଭଗବତୀ, ହୈମବତୀ, ଗିରିଜା ଭବାନୀ ।
ମହିଷାସୁର ମର୍ଦ୍ଦିନୀ ତୁମେ ମା କୃତ୍ତିକା ।୧।

ଚଣ୍ଡମୁଣ୍ଡ ବିନାଶିନୀ ମଙ୍ଗଳଦାୟିନୀ,
ସର୍ବାର୍ଥ ସାଧିକେ ଶିବେ ମାଗୋ ନାରାୟଣୀ ।
ସଙ୍କଟ ତାରିଣୀ ମାଗୋ ତୁମେ କାତ୍ୟାୟନୀ
ମହାମାୟା, ଯୋଗମାୟା, ବ୍ରାହ୍ମଣୀ ରଦ୍ରାଣୀ ।
ତୁମେ ଶିବ ତୁମେ ଶକ୍ତି ତୁମେ ମା ଅମ୍ବିକା ।୨।

ସରସ୍ୱତୀ, ପାର୍ବତୀ, ମା ତୁମେ ଗୋ ସାରଳା,
ତୁମେ କାଳୀ କରାଳୀ ମା ବାରାହୀ ମଙ୍ଗଳା ।
ସାରଦା ବରଦା ମାଗୋ ଯୋଗିନ ହିଙ୍ଗୁଳା,
ଆଦିମାତା, ଦେବମାତା, ତୁମେ ମା' ବଗଳା ।
ଚର୍ଚ୍ଚିକାୟୀ, ବିରଯାୟୀ ଅରୂପା ସ୍ୱରୂପା ।୩।

ଦନୁଜ ନାଶିନୀ ମାଗେ ନୃମୁଣ୍ଡ ମାଳିନୀ
ସରସ୍ୱତ ବିଦ୍ୟାଦାତ୍ରୀ ଜଗତ ବନ୍ଦିନୀ ।
ତୁମେ ଜୟା ବିଜୟା ମା ବିଘ୍ନବିନାଶିନୀ
ଅପର୍ଣ୍ଣା, ଅଭୟା ମାଗୋ ତ୍ରିପାପହାରିଣୀ ।
କମଳା, କୋଶଳା, ହରଚଣ୍ଡି, ଭଟ୍ଟାରିକା ।୪।

ସିଦ୍ଧେଶ୍ୱରୀ, ଲଙ୍କେଶ୍ୱରୀ ତ୍ରିପୁର ମୋହିନୀ
ସମଲାଇ ବିମଳାଇ ଇନ୍ଦ୍ରାଣୀ ଶିବାନୀ ।
ଅଚଳା ଚଞ୍ଚଳା ମାଗୋ ବିଶ୍ୱ ବିମୋହିନୀ
ବ୍ରହ୍ମା ବିଷ୍ଣୁ ଶିବଶକ୍ତି ତୁମେ ଗୋଷାମଣୀ
ଦୁଷ୍ଟ ବିନାଶିନୀ ମାଗୋ ଦକ୍ଷିଣ କାଳିକା ।୫।

(ନୟାଗଡ଼ର ପ୍ରସିଦ୍ଧ ଦକ୍ଷିଣକାଳୀ)
(ଦୁର୍ଗାଙ୍କ ଉଦ୍ଦେଶ୍ୟରେ ଭକ୍ତି ବନ୍ଦନା) ❋❋❋

# ମୁକ୍ତିଦିଅ

ମୁକ୍ତିଦିଅ ପ୍ରଭୁ ମୁକ୍ତିଦିଅ
ଜୀବନ ଜଞ୍ଜାଳୁ ସଂସାର ବନ୍ଧନୁ
ଜନ୍ମ ମରଣରୁ ମୁକ୍ତିଦିଅ ॥

ମୁକ୍ତିଦିଅ ପ୍ରଭୁ ମୁକ୍ତିଦିଅ
ଲୋଭ ଓ ମୋହରୁ ସୁଖ ସମ୍ଭୋଗରୁ
ଦୁଃଖ ଯନ୍ତ୍ରଣାରୁ ମୁକ୍ତିଦିଅ ॥

ମୁକ୍ତିଦିଅ ପ୍ରଭୁ ମୁକ୍ତିଦିଅ
ପର ଚିନ୍ତନରୁ
ପର ନିନ୍ଦାଗାନୁ
ପର ଅପକାରୁ ମୁକ୍ତିଦିଅ ॥

ମୁକ୍ତିଦିଅ ପ୍ରଭୁ ମୁକ୍ତିଦିଅ
ସତ କଥା କହି ସତ ପଥେ ଯାଇ
ସତ୍ କର୍ମ କରି ମୁକ୍ତିଦିଅ ॥

ମୁକ୍ତିଦିଅ ପ୍ରଭୁ ମୁକ୍ତିଦିଅ
ତୁମ ରୂପ ଧ୍ୟାୟୀ ତୁମ ନାମ ଗାଇ
ତୁମ ଚିନ୍ତା କରି ମୁକ୍ତିଦିଅ ॥



# ମୃତ୍ୟୁ ଦିଅ ହେ ଈଶ୍ୱର

ଜୀବନ ଚାହେଁନା, ମୃତ୍ୟୁ ଦିଅ ହେ ଈଶ୍ୱର
ଯେତେ ଦୁଃଖ କଷ୍ଟ ଯନ୍ତ୍ରଣା ଦିଅ ସହିବି
ଲୋଡ଼ା ନାହିଁ ମୋର ସୁଖ ସମୃଦ୍ଧି ବିଶ୍ୱର
ମୃତ୍ୟୁଦିଅ ଶୀଘ୍ର, ତୁମ ନାମ ସଦା ଗାଇବି ॥

ଦେଲ ନାହିଁ ଯଦି ସୁଖ ଶାନ୍ତି ଏଇ ଜୀବନେ
ଆଖି ଲୁହ ଯଦି ଚିର ସାଥି ଖାଲି ହୋଇଲା
କିବା ଲାଭ ଆଉ ବଞ୍ଚିବି କେଉଁ କାରଣେ
ଜୀବନରେ ଯଦି ସୁଖ ଭୋଗ ଦିନେ ନୋହିଲା ॥

ସୁଖ ନାହିଁ ଯଦି ଦୁଃଖ ମୋ ଭାଗ୍ୟେ ଲେଖିଛ
ଦୁଃଖ ପରେ ସୁଖ କିମ୍ପାଇ କରିଛ ବିଧାନ
ସାରା ଜୀବନ କେ କାନ୍ଦିଛି କାହିଁ ଦେଖିଛ
ବଞ୍ଚିବା ଠାରୁ ଶ୍ରେୟସ୍କର ମୋର ମରଣ ॥

ମୃତ୍ୟୁଦିଅ ଶୀଘ୍ର, ମୃତ୍ୟୁ ଚାହେଁ ମୁଁ ଅଚିରେ
ଆଉ କିଛି ମୋର ଏ ଜୀବନେ ନାହିଁ ବାସନା
କିଛି ତ ମାଗିନି କେବେ ମୁଁ ନିଜର ରୁଚିରେ
ଦିଅ ଶୀଘ୍ର, ମୃତ୍ୟୁ ଏତିକି ମାତ୍ର ମୋ ଯାଚନା ॥



# ରାମ ରାମ ଗାଇ ଯାଉ ଜୀବ

ରଘୁନାଥ ନାମେ ପାଉଛ
ପୂଜା ଓଡ଼ଗ୍ରାମରେ
ବିଖ୍ୟାତ ହୋଇଛି ମହିମା
ତୁମ ବିଶ୍ୱଜନରେ ।୧।
ସୁବର୍ଣ୍ଣ କଳସ ଖଚିତ
ତୁମ ମନ୍ଦିରେ ନିତି
ଶହ ଶହ ଭକ୍ତ ଦର୍ଶନ
କରି ଦୁଃଖ ଜଣାନ୍ତି ।୨।
ଶହ ଶହ ଘଣ୍ଟ କାହାଳୀ
ନାଦେ କମ୍ପଇ କାନ
ମହ ମହ ବାସେ କର୍ପୂର
ଧୂପ ଦୀପ ଚନ୍ଦନ ।୩।
ଚହ ମହ ବେଶ ପୋଷାକେ
ଆସି ନବ ଦମ୍ପତି
ଟହ ଟହ ହସି ପ୍ରଣତି
ଢାଳି ଶୁଭ ଇଛନ୍ତି ।୪।
ରହ ରହ ପଣ୍ଡା ଡାକନ୍ତି
ଭକ୍ତ ନ ଯାଅ ଚାଲି
କହ କହ ତୁମ ମନର
କଥା ପ୍ରଭୁଙ୍କୁ ଖୋଲି ।୫।
ନିଅ ନିଅ ଛଡ଼ା ତୁଳସୀ
ଆଉ ଚରଣୋଦକ
ଦିଅ ଦିଅ କିଛି ଦକ୍ଷିଣା
ପୁରିବ ମାନସିକ ।୬।

ଗହଳ ଚହଳ ଲାଗିଛି
  ତୁମ ମନ୍ଦିରେ ସଦା
ସହଳ ସହଳ ଲାଗୁଛି
  ଭୋଗ ସକାଳୁ ସନ୍ଧ୍ୟା ।୭।
ତୁମ ଦୀପ ଜଳେ ଘିଅରେ
  ମୋର ଜଳେ ଲୁହରେ
ତୁମ ଧୂପ ଖୀରି ଖେଚେଡ଼ି
  ଉପବାସେ ମୁଁ ମରେ ।୮।
ତୁମ ଶ୍ରୀଚରଣ ଦର୍ଶନ
  ଆଶେ ରହିଛି ପଡ଼ି
ତୁଳସିପାଦୁକ ଟିକିଏ
  ନିତି ପାରୁନି ଛାଡ଼ି ।୯।
ଚାହେଁନି ଜୀବନେ ମୁକତି
  ପ୍ରଭୁ ଦିଅ ଜନମ
ଜନ୍ମେ ଜନ୍ମେ ଦୁଃଖ ଭୋଗିବି
  ପଛେ ଜପିବି ନାମ ।୧୦।
ଶରଣ ନଦିଅ ଚରଣେ
  ପଛେ ଦିଅ ମରଣ
ଭରଣ ପୋଷଣ କରିଣ
  ବଞ୍ଚିବି କି କାରଣ ।୧୧।
ରାମ ନାମ ଆସୁ ସଦା ମୋ
  ମୁଖେ କୃପାସାଗର
ରାମ ରାମ ଗାଇ ଯାଉ ମୋ
  ଜୀବ କରୁଣାକର ।୧୨।

***



## କବିଙ୍କର ସଂକ୍ଷିପ୍ତ ପରିଚୟ

ନୟାଗଡ଼ ଜିଲ୍ଲାର ଓଡ଼ଗାଁ ବ୍ଲକ ଅନ୍ତର୍ଗତ କୋରପିଠା ଗ୍ରାମରେ ୧୯୩୭ ମସିହା ମାର୍ଚ୍ଚ ମାସ ୧୫ ତାରିଖରେ (ଜନ୍ମ ଜାତକ ଅନୁସାରେ) କବି ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)ଙ୍କର ଜନ୍ମ । ପୂର୍ବରୁ ପ୍ରକାଶିତ "ପ୍ରଭୁ ରଘୁନାଥ ଭଜନ ମାଳା"ର କେତୋଟି ଭଜନ ଓଡ଼ିଶାର ଶାନ୍ତିଲତା ଛୋଟରାୟଙ୍କ ଦ୍ୱାରା ରଘୁନାଥଜୀଉ ପ୍ରାଙ୍ଗଣରେ ପରିବେଶିତ ଏବଂ ଉଚ୍ଚ ପ୍ରଶଂସିତ । "ଜୟ ଶ୍ରୀ ରଘୁନାଥ" (ଶ୍ରୀରାମ ଭଜନ) କବିଙ୍କର ଦ୍ୱିତୀୟ ଭଜନ ସଂକଳନ । ଭଜନ ଗୁଡ଼ିକ ବିଭିନ୍ନ କଣ୍ଠଶିଳ୍ପୀମାନଙ୍କ ଦ୍ୱାରା ରଘୁନାଥଙ୍କ ନିକଟରେ ପରିବେଷଣ କରାଯାଇ ଜନସାଧାରଣଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ । ଭକ୍ତମାନଙ୍କର ଅନୁରୋଧକ୍ରମେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଛି । ଆଶା ଭକ୍ତ ଓ ଶ୍ରଦ୍ଧାଳୁମାନଙ୍କର ମନରେ ଭକ୍ତିଭାବ ସୃଷ୍ଟି କରିବା ।


ISBN : 9788193952788






: ପ୍ରକାଶକ :

ପରମ୍ପରା ପ୍ରକାଶନ, ନୟାଗଡ଼